# ଅଯୋଧ୍ୟା ପ୍ରତ୍ୟାଗମନ

ଶ୍ରୀ କେଶବ ମହାରଣା
ପ୍ରଣୀତ

# AYODHYA PROTYAGOMONO

by
**Kesobo Moharana**



(ପ୍ରଥମ ପ୍ରକାଶ)

ବ୍ରହ୍ମପୁର ଉତ୍କଳ ପ୍ରେସରେ ମୁଦ୍ରିତ ଓ ପ୍ରକାଶିତ

**1948**

ମୂଲ୍ୟ—ଛ'ଅଣା



ଯାହାର ଯତ୍ନରେ ଆଜ ମୁଁ
ଠିଆହୋଇଅଛି । ସେହି ମୋର
ପରମ ପୂଜ୍ୟ ବଡ଼ଭାଇ ଶିଳ୍ପି
ଶ୍ରୀ ବାସୁଦେବ ମହାରଣାଙ୍କ
ପବିତ୍ର ଚରଣକମଳରେ ଭକ୍ତିର
ଉପହାର ସ୍ୱରୂପ ଏହି କ୍ଷୁଦ୍ର
କବିତା ଖଣ୍ଡିକ ଅର୍ପଣ କଲି ।

# ଭୂମିକା

ସଂସ୍କୃତ-ସାହିତ୍ୟ-ନିକୁଞ୍ଜ-ପରଭୃତ, ବାଗ୍‌ଦେବୀଙ୍କ ବର ପୁତ୍ର, ବଙ୍ଗବିଖ୍ୟାତ ସଂସ୍କୃତ ନାଟ୍ୟରତ୍ନାକର ମହାକବି କାଳିଦାସଙ୍କ ଅମର ଲେଖନୀ ପ୍ରସୂତ ରଘୁବଂଶ ଅନନ୍ତ ମହାସମୁଦ୍ର ତୁଲ୍ୟ । ଯେଉଁଥିର ପ୍ରତ୍ୟେକ ଅଂଶ ଉଚ୍ଛୁଳା ନବୀନ ସରସ ଲହରୀ ସ୍ୱରୂପ । ତାହା ଯେତେକ ଆସ୍ୱାଦନ କଲେ ସେତେକ ଲୋଭ ଏଡ଼ୁହୁଏ ନାହିଁ । "ଅଯୋଧ୍ୟା ପ୍ରତ୍ୟାଗମନ" ବର୍ଣ୍ଣିତ ବସ୍ତୁଟି ଲଙ୍କାକାଣ୍ଡର ଅନ୍ତର୍ଗତ । ଏଥିର ଘଟନା ବୈଚିତ୍ର୍ୟ ବିଶେଷ ଭାବରେ ସମାଦୃତ ବର୍ଣ୍ଣିତ । ମୁଁ ଲୋଭ ସମ୍ବରଣ କରି ନପାରି ରାମଚନ୍ଦ୍ରଙ୍କର ସୀତା ସଙ୍ଗେ ବିମାନ ବିହାର ଉପାଖ୍ୟାନକୁ ପଦ୍ୟାକାରରେ ନିଜର ସାଧ୍ୟମତ ସନ୍ନିବେଶିତ କରିବାକୁ ଯାଇଛି ।

ଏହି କାବ୍ୟଟି ରଚନା କରିବା ପୂର୍ବରୁ ମୋର ପରମ ପୂଜ୍ୟାସ୍ପଦ ଭକ୍ତିଭାଜନ ଗୁରୁଦେବ କବିରାଜ ପଣ୍ଡିତ ଶ୍ରୀ ଯୋଢ ବିଜ୍ଞାରୂର୍ଣ୍ଣ, କାବ୍ୟତୀର୍ଥ, ବ୍ୟାକରଣ ତୀର୍ଥ, ବିଦ୍ୱାନ, ବୈଦ୍ୟ ଭୂଷଣ, ପଣ୍ଡିତସମ୍ବଶର୍ମ୍ମା । ମୋର କେତେକ ଖଣ୍ଡ-କବିତା ଦେଖି କାବ୍ୟରଚନା ସମ୍ବନ୍ଧେ ଉପଦେଶ ଓ ଉତ୍ସାହ ଦେଇଥିବା ହେତୁ ମୁଁ ଏ ଜନ୍ମରେ ତାଙ୍କର ନିକଟରେ ଚିରଋଣୀ । ବ୍ରହ୍ମପୁର ଖଲ୍ଲିକୋଟ କଲେଜର ଅଧ୍ୟାପକ ପଣ୍ଡିତ ଶ୍ରୀ ରଘୁନାଥ ମିଶ୍ର ଶାସ୍ତ୍ରୀ କାବ୍ୟତୀର୍ଥ, ବ୍ୟାକରଣ ତୀର୍ଥ ମହୋଦୟ ଏକାନ୍ତ ଦୟାର୍ଦ୍ର ହୋଇ ଏହାର ପାଣ୍ଡୁଲିପିଟି ସଂଶୋଧନ କରିଦେଇ ମୋତେ ଯେଉଁ

ଉତ୍ସାହ ଦେଇଅଛନ୍ତି ସେଥି ନିମନ୍ତେ ମୁଁ ତାଙ୍କଠାରେ ହୃଦୟର ଚିରକୃତଜ୍ଞତା ଜ୍ଞାପନ କରୁଅଛି ।

ପରେ ପୁରୀ କଲେଜର ଅଧ୍ୟାପକ ଶ୍ରୀଯୁକ୍ତ ସଜ୍ଜ-କିଶୋର ରାୟ ଏମ୍.ଏ. ବ୍ରହ୍ମପୁର ଖଲ୍ଲିକୋଟ କଲେଜର ଅଧ୍ୟାପକ ଶ୍ରୀ ଚିନ୍ତାମଣି ଦାଶ ଏମ୍. ଏ., ଓଡ଼ିଶାର ଭୂତପୂର୍ବ ଶିକ୍ଷା, ଅର୍ଥ ଓ ଡ଼େଭେଲପମେଣ୍ଟ ମନ୍ତ୍ରୀ ମାନ୍ୟବର ପଣ୍ଡିତ ଶ୍ରୀ ଗୋଦାବରୀଶ ମିଶ୍ର ଏମ୍. ଏ., ବି. ଟି., ପୁରୀ, ସଂସ୍କୃତ ଏସୋସିଏସନ୍‌ର ସୁପରିଣ୍ଟେଣ୍ଡେଣ୍ଟ ଶ୍ରୀଯୁକ୍ତ କୃଷ୍ଣବିହାରୀ ଦାଶ, ଏମ୍. ଏ., ଓଡ଼ିଶାର ଶିକ୍ଷା ଓ ସ୍ୱାସ୍ଥ୍ୟ ମନ୍ତ୍ରୀ ମାନ୍ୟବର ପଣ୍ଡିତ ଶ୍ରୀ ଲିଙ୍ଗରାଜ ମିଶ୍ର ଏମ୍. ଏ., ଓଡ଼ିଶା ଗଡ଼ଜାତ ସମ୍ମିଳନୀର ଭୂତପୂର୍ବ ପରାମର୍ଶଦାତା ଓ ଓଡ଼ିଶା ସାଦରନ୍ ସାର୍କିଲ ସ୍କୁଲ ବିଭାଗ ଇନସ୍‌ପେକ୍ଟର ଡ଼ାକ୍ତର ଶ୍ରୀ ମାୟାଧର ମାନସିଂହ ଏମ୍. ଏ., ଡି. ଲି. ଡ଼., ସହକାର ଓ ମାତୃଭୂମିର ସମ୍ପାଦକ ଶ୍ରୀଯୁକ୍ତ ବାଳକୃଷ୍ଣ କର ବି.ଏ., ଉତ୍କଳ ବିଶ୍ୱବିଦ୍ୟାଳୟର ରେଜିଷ୍ଟ୍ରାର ଶ୍ରୀଯୁକ୍ତ ଗୋକୁଳଚନ୍ଦ୍ର ଶତପଥୀ, ଓ ପଣ୍ଡିତ ଶ୍ରୀ ନୀଳକଣ୍ଠ ରଥ ମହୋଦୟ କାବ୍ୟଟି ଆମୂଳଚୂଳ ଆବୃତ୍ତି କରି ଅନୁକୂଳ ମତ ପ୍ରକାଶ କରି ମୋତେ ବିଶେଷ ଉତ୍ସାହିତ କରି ଥିବାରୁ ମୁଁ ସେମାନଙ୍କଠାରେ ଆଜୀବନ କୃତଜ୍ଞତା ସ୍ୱୀକାର କରୁଅଛି ।

ନୀଳଗିରି ଷ୍ଟେଟର ଫାରେଷ୍ଟ ଅଫିସର ଓ ନବଦୁର୍ଗା (ନୟାଗଡ଼) ବିଶ୍ୱକର୍ମା ସମିତିର ସଭାପତି ଶ୍ରୀ ନାରାୟଣ ମହାରଣା, ଦ ଓଡ଼ିଶା ଇଞ୍ଜିନିଅର ରେଭ୍ୟୁ ବୁଲେଟିନ୍‌ର ସମ୍ପାଦକ, ଇଣ୍ଡିଏନ ରେଡ୍‌କ୍ରସ୍ ସୋସାଇଟିସ୍ ଗଞ୍ଜାମ ଓ ଏସ୍. ପି. ସି. ଏ. ର

ଅନେରରି ସେକେଟେରୀ ରାଏବାହାଦୁର ଏମ୍. ଭି. ଅପାରାଓ ଏମ୍. ଏ. ଇ. ବାବୁ ଶ୍ରୀ ପ୍ରଫୁଲ୍ଲକୁମାର ରାଜ, ଶ୍ରୀ ଗୌରହରି ପଟ୍ଟନାୟକ, ଶ୍ରୀ ରଘୁନାଥ ମହାରଣା, ଶ୍ରୀ ବିନୋଦଚନ୍ଦ୍ର ମହାପାତ୍ର ଶ୍ରୀ ନଟବର ମହାରଣା, ଶ୍ରୀ ରାମଚନ୍ଦ୍ର ମହାରଣା, ଶ୍ରୀ ନୀଳକଣ୍ଠ ଦଳେଇ ମହାଶୟ ମୋତେ ଯେଉଁ ଉତ୍ସାହ ଓ ସାହାଯ୍ୟ ପ୍ରଦାନ କରିଛନ୍ତି ତାହାର ଫଳରେ ପୁସ୍ତକଟି ପ୍ରକାଶ ପାଇଥିବାରୁ ମୁଁ ସେମାନଙ୍କ ନିକଟରେ ଚିରକୃତଜ୍ଞତା ପାଶରେ ଅବଦ୍ଧ ରହିଲି ।

ପରିଶେଷରେ ବକ୍ତବ୍ୟ ଏହି ମାନନୀୟ ପଣ୍ଡିତ ଶ୍ରୀ ନୀଳକଣ୍ଠ ରଥ ସ୍ୱୟଂ ଏହାର ପ୍ରୁଫ୍ ସଂଶୋଧନ ଭାର ଗ୍ରହଣ କରି ମୋର ପରମ ଉପକାର ସାଧନ କରିଅଛନ୍ତି, ଏବ ମୋର ବନ୍ଧୁ ବାବୁ ଶ୍ରୀ ସଚ୍ଚିଦାନନ୍ଦ ମହାପାତ୍ର ବିଶେଷ ସାହାଯ୍ୟ କରିଥିବାରୁ ମୁଁ ସେମାନଙ୍କ ନିକଟରେ ହୃଦୟର ଭକ୍ତି ଜଣାଉ ଅଛି । ମୋର ନବୋଦ୍ୟମ-ପ୍ରସୂତ ଏହି କ୍ଷୁଦ୍ରକାବ୍ୟଟି ଯେବେ ସହୃଦୟ ପାଠକ ପାଠିକାଗଣଙ୍କର ଏବ ଶିକ୍ଷା ବିଭାଗୀୟ କର୍ତ୍ତୃପକ୍ଷଙ୍କର ସୁଦୃଷ୍ଟି ଆକୃଷ୍ଟ ହେଲେ ଶ୍ରମ ସାର୍ଥକ ମନେ କରିବି । ଇତି

ବ୍ରହ୍ମପୁର<br>ଦୋଳପୂର୍ଣ୍ଣିମା ୨୫।୩।୪୮ } ଶ୍ରୀ କେଶବ ମହାରଣା



# ଅଭିମତ

(ବ୍ରହ୍ମପୁର ଖଲ୍ଲିକୋଟ କଲେଜର ଅଧ୍ୟାପକ
ପଣ୍ଡିତ ଶ୍ରୀ ରଘୁନାଥ ମିଶ୍ର ଶାସ୍ତ୍ରୀ କାବ୍ୟତୀର୍ଥ ଓ ବ୍ୟାକରଣତୀର୍ଥ
ମହୋଦୟଙ୍କ ଅଭିମତ)

ଶ୍ରୀମାନ୍ କେଶବ ମହାରଣାଙ୍କ ଅଭିନବାମୃତ ନିଃସ୍ୟନ୍ଦିନୀ ଲେଖନୀ ବିନିଃସୃତ "ଅଯୋଧ୍ୟା ପ୍ରତ୍ୟାଗମନ" ପଦ୍ୟଟି ଆଦ୍ୟୋପାନ୍ତ ଦେଖିଲି । କବିଙ୍କର ଏହା ନୂତନ ଲେଖା ହେତୁ ସ୍ଥଳ ବିଶେଷରେ ସାମାନ୍ୟ ପରିବର୍ତ୍ତନ ଓ ପରିବର୍ଦ୍ଧନ ମଧ୍ୟ କରିଦେଲି । କବିଙ୍କ ପଦ୍ୟ କବିତା ଲେଖାରେ ଯେଉଁ ଅଦ୍ଭୁତ ପ୍ରତିଭା ତାହା ଦେଖି ମୁଁ ଅତ୍ୟନ୍ତ ଆନନ୍ଦିତ ହେଲି ! କବିତାଟି ସଂଶୋଧନ କଲାବେଳେ ମୁଁ କହିଲି ଯେ, "ଏଥିରେ ବଶିଷ୍ଠଙ୍କର ଉପଦେଶ କିଛି ରହିବା ଉଚିତ" କବି ସ୍ୱୀକୃତ ହୋଇ ସହସା ଯେ ଉପଦେଶାବଳୀର ବର୍ଣ୍ଣନା କରିଗଲେ ତାହା ଦେଖି ଯେ କୌଣସି ହୃଦୟବାନ୍ ଲୋକ ନିଶ୍ଚୟ ମୁଗ୍ଧ ହେବେ, ଏଥିରେ ମୋର ଅଣୁମାତ୍ର ସନ୍ଦେହ ନାହିଁ । କବି ଭାରତୀ ନିକୁଞ୍ଜ ମହୋଦ୍ ଉପତ୍ୟକାଧିବାସୀ ହୋଇଥିବାରୁ ଭବିଷ୍ୟତରେ ଦିନେ ଏ କବିତା କାନନରେ ପଞ୍ଚାନନ ସଦୃଶ୍ୟ ନିର୍ଭୟେ ଭ୍ରମଣ କରିବେ, ଏହି ବିଶ୍ୱାସ ମୋର ଜନ୍ମି ଅଛି । ଆଶାକରେ କବି ଧାରାବାହିକ ରଚନା କରି ଦକ୍ଷିଣ ଓଡ଼ିଶାର ଅପରିହାର୍ଯ୍ୟ ପ୍ରାକୃତ ଗୁପ୍ତ ସୌନ୍ଦର୍ଯ୍ୟର ବିକାଶ ସାଧନ କରି ନିଖିଳ ଉତ୍କଳକୁ ବିମୋହିତ କରିବେ ।

ବ୍ରହ୍ମପୁର-ଗଞ୍ଜାମ }
୧୨-୯-୪୭ }

ଶ୍ରୀ ରଘୁନାଥ ମିଶ୍ର ଶାସ୍ତ୍ରୀ

(ପୁରୀ କଲେଜର ଅଧ୍ୟାପକ
ଶ୍ରୀଯୁକ୍ତ ବାବୁ ବ୍ରଜକିଶୋର ରାୟ ଏମ୍, ଏ,
ମହୋଦୟଙ୍କ ଅଭିମତ)

ଶ୍ରୀଯୁକ୍ତ କେଶବ ମହାରଣାଙ୍କର "ଅଯୋଧ୍ୟା ପ୍ରତ୍ୟାଗମନ" କାବ୍ୟର ପାଣ୍ଡୁଲିପି ଟି ପାଠ କରିବାର ସୁଯୋଗ ପାଇ ମୁଁ ଆନନ୍ଦିତ ହୋଇଛି । କାବ୍ୟକାର ସଂକ୍ଷିପ୍ତ କାବ୍ୟରେ ଶ୍ରୀ ରାମଚନ୍ଦ୍ରଙ୍କର ଜାନକୀ ସହିତ ବିମାନ-ବିହାର ଗୁରୁ ଶବ୍ଦାବଳୀର ଗୋଟିଏ ସୁନ୍ଦର ଓ ସଂଯୋଜିତ ଆଲେଖ୍ୟର ପରିବେଷଣ କରିଅଛନ୍ତି ।

ପ୍ରାଚୀନ ଗ୍ରୀସରେ ଯେପରି ଇଲିୟଡ୍, ଭାରତ ବର୍ଷରେ ସେହିପରି ରାମାୟଣ ଓ ମହାଭାରତ । ଏହା ସମସ୍ତ ଭାରତ ବର୍ଷର ହୃତ୍‌ପଦ୍ମସମ୍ଭବ ଓ ହୃତ୍‌ପଦ୍ମବାସୀ ଭାବରେ ପ୍ରତିଷ୍ଠିତ । ପ୍ରାଚୀନ ଆର୍ଯ୍ୟ ସଭ୍ୟତାର ଏକଧାରା ସ୍ୱରୂପ ଏବଂ ଏହି ଧାରା ଭାରତରେ ପ୍ରବାହିତ ହୋଇଅଛି । ସ୍ୱରୂପର ଧାରା ଦୁଇ ମହାକାବ୍ୟରେ ଓ ଭାରତର ଧାରା [illegible] ମହା କାବ୍ୟରେ ନିଜର କଥା ଓ ସଙ୍ଗୀତ ରକ୍ଷାକରି ପ୍ରବାହିତ ହେଉଅଛି ।

ଶତାବ୍ଦୀ ପରେ ଶତାବ୍ଦୀ ଅତିକ୍ରାନ୍ତ ହୋଇ ଯାଇଅଛି; ଯିବ ମଧ୍ୟ, ମାତ୍ର ବାଲ୍ମୀକି କଣ୍ଠ ନିସୃତ ମଧୁ ପଦ ସଂଚୟ ରାମାୟଣର ଅମୀୟ ଧାରା ଲେଶମାତ୍ର ଶୁଷ୍କ ହୋଇଯିବ ନାହିଁ । କାଳର ମହାପ୍ରାନ୍ତରରେ ମହା କବିଙ୍କ ନାମ ହୃତ ଓ ବିସ୍ମୃତ ହୋଇ ଯାଇଛି ସତ, କିନ୍ତୁ ଯେଉଁ କାବ୍ୟର ବାଣୀ ବହୁ କୋଟି ନରନାରୀର ଦ୍ୱାରେ ଦ୍ୱାରେ ଆଜି ପର୍ଯ୍ୟନ୍ତ ଅଜସ୍ର ଧାରା ଓ ଅଜସ୍ର

ବ୍ୟାଖ୍ୟାନରେ ଶକ୍ତି ଓ ଶାନ୍ତି ବର୍ଦ୍ଧନ କରି ଆସୁଛି, ଶତ ଶତ ପ୍ରାଚୀନ ଶତାବ୍ଦୀର ମୃତ୍ତିକା ଅନ୍ତରରେ ଅନୁସ୍ୟୂତ ରହି ଭାରତ-ବର୍ଷର ଚିତ୍ତ ଭୂମିକୁ ଆଜି ବି ଉର୍ବର କରି ରଖିଛି, ତାହାର ଜୟଗାନ ପ୍ରତି ଭାରତୀୟର ହୃଦ-କନ୍ଦରରେ ପ୍ରତିଧ୍ୱନିତ ହୋଇ ଉଦ୍‌ବୁଦ୍ଧ କରିବ, ସନ୍ଦେହ ନାହିଁ ।

ଦେବତାର ଅବତାର ଲୀଳା ଦେଖି ଏ କାବ୍ୟ ରଚିତ ହୋଇନାହିଁ । ରାମ ମନୁଷ୍ୟ ଓ ସେହି ରୂପେହିଁ ବାଲ୍ମୀକିଙ୍କର ପ୍ରତିଭାନ୍ୱିତ ଚକ୍ଷୁ ସମ୍ମୁଖରେ ଉଦ୍ଭାସିତ ରହିଥିଲେ । ରାମ ମନୁଷ୍ୟ ବୋଲି ରାମଚରିତ ମହିମାନ୍ୱିତ ।

ଆଦିକାଣ୍ଡର ପ୍ରଥମ ସର୍ଗରେ ବାଲ୍ମୀକି ତାହାଙ୍କର କାବ୍ୟର ଉପଯୁକ୍ତ ନାୟକକୁ ବହୁଗୁଣାନ୍ୱିତ କରିବା ଅଭିପ୍ରାୟରେ ନାରଦଙ୍କ ଠାରୁ ପରାମର୍ଶ ନେବାପାଇଁ ତାହାଙ୍କୁ ଜିଜ୍ଞାସା କଲେ:-

ସମଗ୍ରା ରୂପିଣୀ ଲକ୍ଷ୍ମୀଃ
କମେକଂ ସଂଶ୍ରିତା ନରମ୍

ନାରଦ ଉତ୍ତର ଦେଲେ:—

ଦେବେଷ୍ୱପି ନ ପଶ୍ୟାମି କଶ୍ଚିଦେଭି ର୍ଗୁଣୈ ର୍ଯୁତମ୍
ଶ୍ରୂୟତାଂ ତୁ ଗୁଣୈ ରେଭିର୍ଯୋ ଯୁକ୍ତୋ ନରଚନ୍ଦ୍ରମାଃ

ରାମାୟଣ ସେହି ନରଚନ୍ଦ୍ରମାଙ୍କର କଥା । ଦେବତାର କଥା ନୁହେଁ । ରାମାୟଣରେ ଦେବତା ନିଜକୁ ଖର୍ବ କରି ମନୁଷ୍ୟ କରିନାହିଁ; ମନୁଷ୍ୟ ନିଜ ଗୁଣରେ ଦେବତାର ସ୍ଥାନ ଲାଭ କରିଛି ।

ସେହି ମହାଗାଥାର ଆଂଶିକ ଉପାଖ୍ୟାନକୁ ବନ୍ଧୁ କେଶବଚନ୍ଦ୍ର, ‘ଅଯୋଧ୍ୟା ପ୍ରତ୍ୟାଗମନ’ କାବ୍ୟରେ ରୂପ ଦେଇଛନ୍ତି । କାବ୍ୟର ସମୃଦ୍ଧି ଦେଖି ମୁଁ ଯେତେ ଉଲ୍ଲସିତ ହୋଇନାହିଁ କାବ୍ୟକାରଙ୍କର ଆନ୍ତରିକତା ଓ ବ୍ୟକ୍ତିତ୍ୱ ମୂର୍ଗ ମତେ ବେଶୀ ଆନନ୍ଦ ଦେଇଛନ୍ତି । କାରଣ ଆଧୁନିକତା ମୋହରେ ମୁଗ୍ଧ ହୋଇଥିଲେ ଲେଖକ ଏଭଳି କାବ୍ୟ ପ୍ରଣୟନ କରିବା ପୂର୍ବରୁ ଶତବାର ଚିନ୍ତା କରିଥାନ୍ତେ ।

ରାମଚରିତର ଆଦର୍ଶ ତାଙ୍କୁ ପ୍ରଲୁବ୍ଧ କରିଛି ସନ୍ଦେହ ନାହିଁ । କବିର ପ୍ରଧାନ ଅସ୍ତ୍ର ଅଭିବ୍ୟକ୍ତି । ମାତ୍ର ସେ ଅଭିବ୍ୟକ୍ତି ଯେପରି ସତ୍ୟ ଓ ସୁନ୍ଦରର ପରିପୋଷକ ହୁଏ ତାହା ପ୍ରଣିଧାନର ବିଷୟ । ରାମଗାଥା ଭଳି ମହତ୍ତର ଅଭିବ୍ୟକ୍ତିର ଅଭାବ ଆଜ ଲକ୍ଷିତ ହେଉଥିବାରୁ କବି ଲେଖନୀ ଚୂର୍ଣ୍ଣ ଓ ବ୍ୟତିବ୍ୟସ୍ତ ହୋଇ ଯାଉଛି ।

କାବ୍ୟକାର କେଶବଚନ୍ଦ୍ରଙ୍କର ରଚନା-ଶୈଳୀ ମନୋହର । ଅପର ଛନ୍ଦରେ ପଂକ୍ତି ଗୁଡ଼ିକ ସ୍ୱାଭାବିକ ଭାବରେ ରଚିତ । ସାଗର ଓ ଅନ୍ୟଦୃଶ୍ୟ ବର୍ଣ୍ଣନା ‘ରଘୁବଂଶମ୍’ର ଉପଯାଚିତ ବୋଧ ହେଲେ ମଧ୍ୟ, ତାଙ୍କର ନିଜସ୍ୱ ମୋହନ କଳ୍ପନାରେ କାର୍ପଣ୍ୟ ଦେଖାଯାଏ ନାହିଁ ।

ଭାଷା ଶୁଦ୍ଧ ଓ ମାର୍ଜିତ । ବର୍ଣ୍ଣନାର ଭଙ୍ଗୀରେ ହୃଦୟ ପରିପ୍ଳୁତ ହୋଇଯାଏ । ରାମମାନସର ଏହି କରୁଣାତ୍ମକ ବର୍ଣ୍ଣନା:—

"ଏହୁ ସ୍ଥାନେ ସଖି ଅବସ୍ଥାନ ବେଳେ
ଜଳଧାର ସିକ୍ତ କଲା ସେତେବେଳେ
ପଲ୍ଲୀ ପ୍ରାନ୍ତର କଦମ୍ବ କେଶର
ଅର୍ଦ୍ଧ ବିକଶିତ ଗନ୍ଧ ମନୋହର
ମୟୂର କୁଳର କେକାରବ ସ୍ୱତଃ
ବୋଧ ହେଉଥିଲା ସତ୍ୟ ବିପ୍ଳବତ୍

× × ×

ସତୃଷ୍ଣ ନୟନେ ଦେଖିଲି ସଲିଳେ,
ମୀନ ଯୂଥ ସୁଖେ ଖେଳନ୍ତି ଉଚ୍ଛଳେ
ନୟନ ଜଳରେ ବକ୍ଷଃସ୍ଥଳ ମୋର
ଦେଖି ଅଭିଷିକ୍ତ ହେଲା ବାରଂବାର ।"

ଉପସଂହାରରେ ଏତିକି ବକ୍ତବ୍ୟ ଯେ କାବ୍ୟଟି ଲୋକ-ଶିକ୍ଷା ଦିଗରେ ଯଥେଷ୍ଟ ସାହାଯ୍ୟ କରିବ । କେଶବ ବାବୁଙ୍କୁ ମୋର ଅନୁରୋଧ ସେ 'ଅଯୋଧ୍ୟା ପ୍ରତ୍ୟାଗମନ' କାବ୍ୟ ପ୍ରଣୟନ କରିବା ପରେ ଉତ୍କଳ ସାହିତ୍ୟ କ୍ଷେତ୍ରରୁ ଯେପରି 'ପ୍ରତ୍ୟାବର୍ତ୍ତନ' ନ କରନ୍ତି । ପ୍ରତ୍ୟାବର୍ତ୍ତନର ଅଭିବ୍ୟକ୍ତି ଘଟେ ପରେ ତାଙ୍କର ଦିବ୍ୟ ଲେଖନୀ ଆଗମନୀ ବାଣୀର ମଙ୍ଗଳ ସଙ୍ଗୀତ କରୁ ଏହାହିଁ ମୋର ସସ୍ନେହ କାମନା ।

ପୁରୀ
୨୦।୧୨।୪୭

ଶ୍ରୀ ବ୍ରଜକିଶୋର ରାୟ



(ଓଡ଼ିଶାର ଭୂତପୂର୍ବ ଶିକ୍ଷା, ଅର୍ଥ ଓ ଡେଭଲପ୍‌ମେଣ୍ଟ ମନ୍ତ୍ରୀ ମାନନୀୟ ପଣ୍ଡିତ ଶ୍ରୀ ଗୋଦାବରୀଶ ମିଶ୍ର ଏମ୍, ଏ, ବି, ଟି, ମହୋଦୟଙ୍କ ଅଭିମତ)

ଶ୍ରୀ କେଶବ ମହାରଣାଙ୍କ ରଚିତ "ଅଯୋଧ୍ୟା ପ୍ରତ୍ୟାଗମନ" କାବ୍ୟର ପାଣ୍ଡୁଲିପି ମୁଁ ପଢ଼ିଅଛି । କାବ୍ୟର ବିଷୟବସ୍ତୁ ପୌରାଣିକ । ସେହି ବିଷୟବସ୍ତୁ ଅବଲମ୍ବନରେ ଶତାବ୍ଦୀ ଶତାବ୍ଦୀ ଧରି କେବଳ ଓଡ଼ିଆ ଭାଷାରେ ନୁହେଁ, ଭାରତର ଅନ୍ୟାନ୍ୟ ଭାଷା ମାନଙ୍କରେ ମଧ୍ୟ, କବିମାନେ ନିଜ ନିଜର କବିତା ପ୍ରତିଭା ପ୍ରକାଶ କରିଅଛନ୍ତି । ଏପରି କାବ୍ୟରେ କବିଙ୍କର କୃତିତ୍ୱ ବିଷୟବସ୍ତୁର ପରିକଳ୍ପନାରୁ ଜଣାପଡ଼େ ନାହିଁ, ଯାଏ ଅଲଙ୍କାର ପରିପାଟିରୁ । ଏ କାବ୍ୟର ଲେଖକଙ୍କର କଳାକୁଶଳତାର ପରିଚୟ ମୁଁ ସ୍ଥାନାନ୍ତରରେ ପାଇଥିଲି । କାବ୍ୟ ରଚନା କୁଶଳତା ମଧ୍ୟ ତାଙ୍କର ଅଛି । ଅବଶ୍ୟ ଏହି କାବ୍ୟ ତାଙ୍କର ପ୍ରଥମ ଲେଖା । ଉତ୍ତରୋତ୍ତର ସାଧନାରେ ତାଙ୍କର କାବ୍ୟକୁଶଳତା ବୃଦ୍ଧି ଲାଭକରି କବି ଭାବରେ ଯେ ତାଙ୍କ ପ୍ରତିଷ୍ଠା ବଢ଼ାଇବ, ସେଥିରେ ସନ୍ଦେହ ନାହିଁ । ଉପର୍ଯ୍ୟୁକ୍ତ କାବ୍ୟଟି ସେ ପୁସ୍ତକାକାରରେ ପ୍ରକାଶ କରିବାକୁ ଯାଉଛନ୍ତି । ପାଠକମାନଙ୍କ ମଧ୍ୟରେ ଏହାର ଆଦର ଦେଖିଲେ ସେ ଭବିଷ୍ୟତରେ କାବ୍ୟଚର୍ଚ୍ଚା ନିମନ୍ତେ ବିଶେଷ ଉତ୍ସାହିତ ହେବେ ।

କଟକ
୨୨-୯-୫୭ } ଗୋଦାବରୀଶ ମିଶ୍ର

Pandit Lingaraj Misra
Minister
Education, Health &
L. S. G. Orissa.

Cuttack
25-2-1947

ପ୍ରିୟ ମହାଶୟ,

ଆପଣଙ୍କର କବିତାଟି ପାଠ କଲି । ମୋଟାମୋଟି ମନ୍ଦ ହୋଇ ନାହିଁ । କବିତାଟିରେ ସେପରି କୌଣସି ବିଶେଷତ୍ୱ ମୁଁ ଲକ୍ଷ୍ୟ କରି ପାରୁ ନାହିଁ । ସୁତରାଂ କୌଣସି ବିଶେଷ ଅଭିମତ ଲିପିବଦ୍ଧ କରିବା ସମୀଚୀନ ହେବ ନାହିଁ ବୋଲି ମୋର ମନେ ହୁଏ । ଇତି

ଶ୍ରୀ ଲିଙ୍ଗରାଜ ମିଶ୍ର



(ସହକାର ପତ୍ରିକାର ସମ୍ପାଦକ ଶ୍ରୀଯୁକ୍ତ ବାଳକୃଷ୍ଣ କର ବି, ଏ, ମହାଶୟଙ୍କ ଅଭିମତ)

× × × କାବ୍ୟଟି ସୁଖ ପାଠ୍ୟ । ତଥାପି ଏ ନୂଆ ଯୁଗର ପାଠକମାନେ ନୂତନ ଧରଣର କବିତାର ରସାସ୍ୱାଦନ ପାଇଁ ବ୍ୟାକୁଳ ଥିବା ବେଳେ ଏ ଭଳି ପୁରୁଣା କଳସର ଅନୁବାଦରେ କେତେଦୂର ଆଗ୍ରହ ପ୍ରକାଶ କରିବେ ବିଚାର କରିବାର କଥା ।

କଟକ
୧୦।୩।୧୯୪୭

ଆପଣଙ୍କର
ବାଳକୃଷ୍ଣ କର

(ବ୍ରହ୍ମପୁର ଖଲ୍ଲିକୋଟ କଲେଜର ଅଧ୍ୟାପକ ଶ୍ରୀଯୁକ୍ତ ଚିନ୍ତାମଣି
ଦାଶ ଏମ୍, ଏ, ମହୋଦୟଙ୍କ ଅଭିମତ)

ଉଦୀୟମାନ ତରୁଣ କବି ଶ୍ରୀ କେଶବ ମହାରଣାଙ୍କ ପ୍ରଣୀତ ଅଯୋଧ୍ୟା-ପ୍ରତ୍ୟାଗମନ କାବ୍ୟର ପାଣ୍ଡୁଲିପି ମୁଁ ପାଠକରି ବିଶେଷ ପ୍ରୀତି ଲାଭକରିଅଛି । ଉତ୍କଳ ସାହିତ୍ୟରେ ବର୍ତ୍ତମାନ କାବ୍ୟଯୁଗର ଅବସାନ ହେଉଅଛି ବୋଲି ମନେ କରିବା ସ୍ୱାଭାବିକ । ବର୍ତ୍ତମାନ ଉତ୍କଳ-ସାହିତ୍ୟରେ ଭାବୋଦ୍ଦୀପକ ଖଣ୍ଡକବିତା, ଗଳ୍ପ ଓ ଉପନ୍ୟାସର ପ୍ରାଧାନ୍ୟ ବେଶୀ । କଥା-ସାହିତ୍ୟହିଁ ଆଜିକାଲି ପାଠକ ପାଠିକାମାନଙ୍କର ଅତିପ୍ରିୟ ହୋଇ ପଡ଼ିଅଛି । ଓଡ଼ିଆ ଅବାହମାନକାଳରୁ କାବ୍ୟ ଓ ସଙ୍ଗୀତ ପ୍ରିୟ ଜାତି, ଏହା ତାହାର ବୈଶିଷ୍ଟ୍ୟ । ସଙ୍ଗୀତର ମୋହନ ମଧୁର ମୂର୍ଚ୍ଛନାରେ ଦିନେ କବିସମ୍ରାଟ ଓ ଗୋପାଳକୃଷ୍ଣ ଓଡ଼ିଆ-ପ୍ରାଣରେ ନୂତନ ସ୍ପନ୍ଦନ ଆଣି ଦେଇଥିଲେ ଏବଂ ଏବେ ସୁଦ୍ଧା ସେହି ଅପୂର୍ବ ସ୍ପନ୍ଦନ ଓ ସଙ୍ଗୀତମୟୀ ଭାବଧାରା ଆମ୍ଭମାନଙ୍କର ଅନ୍ତର ପ୍ରଦେଶରେ ଧ୍ୱନିତ ହେଉଅଛି । ଓଡ଼ିଆ ଜାତିର ସେହି ସଙ୍ଗୀତ-ପ୍ରୀତି ଓ କାବ୍ୟପ୍ରିୟତା କ୍ରମଶଃ ହ୍ରାସ ଲାଭ କରୁଥିବାର ଦେଖି ହୃଦୟରେ ଅପରିସୀମ ବେଦନାର ଉଦ୍ରେକ ହୁଏ । ଏହି ସମୟରେ ମହାରଣାଙ୍କ କୃତ 'ଅଯୋଧ୍ୟା ପ୍ରତ୍ୟାଗମନ' କାବ୍ୟଟି ନୈରାଶ୍ୟ-ଜର୍ଜରିତ ହୃଦୟରେ ନବ ଆଶା ଆଣିଦିଏ । ରାମାୟଣର କଥାବସ୍ତୁ ଚିରକାଳ ହିନ୍ଦୁର ଆଦର-ସାମଗ୍ରୀ ହୋଇ ରହିଛି ।

ହିନ୍ଦୁ ସଭ୍ୟତା ଓ ସଂସ୍କୃତିର ଜୀବନ୍ତ ଇତିହାସ ରାମାୟଣ । କବି ମହାଲକ୍ଷ୍ମୀ ରାମାୟଣ-ବର୍ଣ୍ଣିତ ଏହି ଅଯୋଧ୍ୟା-ପ୍ରତ୍ୟାଗମନ ଅଂଶବୃତ୍ତରେ ଯେଉଁ କାବ୍ୟ ରଚନା କରିଅଛନ୍ତି ତାହା ପ୍ରତ୍ୟେକ ପାଠକ ପାଠିକାଙ୍କର ଚିତ୍ତ ବିନୋଦନ କରିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ । କବିଙ୍କର କଳ୍ପନା-ଗୁରୁତ୍ୱ, ଶବ୍ଦ-ବିନ୍ୟାସ-କୌଶଳ ଓ ରଚନା-ଶୈଳୀ କାବ୍ୟର ସୌଷ୍ଠବ ଓ ସୌନ୍ଦର୍ଯ୍ୟ ସମ୍ପାଦନ କରିଅଛି । ରାମଚନ୍ଦ୍ରଙ୍କର ଚରିତ୍ରର ମହତ୍ତ୍ୱ ତାଙ୍କ ଲେଖନୀରେ ଖଣ୍ଡିତ କିମ୍ବା କ୍ଷୁଣ୍ଣ ହୋଇନାହିଁ । କବି ଚିରକାଳ ସୌନ୍ଦର୍ଯ୍ୟର ଉପାସକ ଓ ରୂପପିପାସୁ, ତେଣୁ ଉତ୍କଳର ପ୍ରକୃତିର ସୌନ୍ଦର୍ଯ୍ୟ ବର୍ଣ୍ଣନା କରିବାକୁ ଯାଇ ଅକୃତକାର୍ଯ୍ୟ ହୋଇ ନାହାନ୍ତି । ସମୁଦ୍ର ବର୍ଣ୍ଣନା ଏହାର ଜ୍ୱଳନ୍ତ ନିଦର୍ଶନ । ଆଶାକରେ ଉତ୍କଳର ତରୁଣ ତରୁଣୀମାନଙ୍କ ଦ୍ୱାରା କାବ୍ୟଟି ସମାଦୃତ ହେବ ।

କାବ୍ୟ-ତପୋବନରେ ଅମ୍ଭମାନଙ୍କର ଉଦୀୟମାନ କବି ଯେଉଁ ତପସ୍ୟା ଆରମ୍ଭ କରିଅଛନ୍ତି, ସେ ଭବିଷ୍ୟତରେ ସେଥିରେ ସିଦ୍ଧିଲାଭ କରନ୍ତୁ । ତାଙ୍କର କାବ୍ୟକବିତାରେ ଉତ୍କଳ ସାହିତ୍ୟ ସମୃଦ୍ଧ ହେଉ ।

ବ୍ରହ୍ମପୁର
୧୩-୨-୫୨ } ଶ୍ରୀ ଚିନ୍ତାମଣି ଦାଶ

——:O:——

(ପୁରୀ ସଂସ୍କୃତ ଅସୋସିଏସନର ସୁପରିଣ୍ଟେଣ୍ଡେଣ୍ଟ
ସାହିତ୍ୟିକ ଶ୍ରୀଯୁକ୍ତ କୁଞ୍ଜବିହାରୀ ଦାଶ, ଏମ୍, ଏ,
ମହୋଦୟଙ୍କ ଅଭିମତ)

ପ୍ରିୟ କେଶବ ବାବୁ,

ଶତଶୀର୍ବାଦ ଗ୍ରହଣ କରିବେ । ଆପଣଙ୍କର କେତେକ କବିତା 'ନବୀନ'ରେ ପଢ଼ିବାର ସୁଯୋଗ ଲାଭ କରିଛି । ପ୍ରକୃତ ପରିଚୟର କ୍ଷେତ୍ର ସାହିତ୍ୟ; ଏ ପରିଚୟ ସ୍ୱାର୍ଥ କଳୁଷିତ ନୁହେଁ—ଏହା ଚିରନ୍ତନ, ତେଣୁ ବ୍ୟକ୍ତିଗତ ଭାବରେ ଆପଣଙ୍କ ସହିତ ପରିଚୟ ନହେଲେ ବି ଅନ୍ତରର ପରିଚୟ ପାଇ ସୁଖୀ ହୋଇଛି ।

× × × ବର୍ତ୍ତମାନ ଓଡ଼ିଆ ଜାତିର ଦୁର୍ଦ୍ଦିନରେ ଆପଣ ଯେ ଲେଖନୀ ଧରିଛନ୍ତି ସେଥିଲାଗି ଶତସହସ୍ର ଧନ୍ୟବାଦ । ଜାତିର କଳୁଷ କାଳିମା ଦୂରକରି ବିଶ୍ୱଦରବାରରେ ତାକୁ ଏକ ଗୌରବମୟ ଆସନ ଦେବେ ବୋଲି ମୁଁ ବିଶ୍ୱାସ କରୁଛି । ପ୍ରଭୁ ଶକ୍ତି, ସାହସ ଓ ଶୌର୍ଯ୍ୟ ଦିଅନ୍ତୁ ଏହାହିଁ ମୋର ଶୁଭ କାମନା । ଇତି ।

ପୁରୀ }
୧୧-୬-୫୨ }

ଶୁଭକାଂକ୍ଷୀ
କୁଞ୍ଜବିହାରୀ ଦାଶ



(ଓଡ଼ିଶା ଗଡ଼ଜାତ ସମୂହର ଭୂତପୂର୍ବ ଶିକ୍ଷା ବିଭାଗ ଅଧ୍ୟକ୍ଷଙ୍କର ଓ ଇନ୍‌ସପେକ୍ଟର ଅଫ୍ ସ୍କୁଲସ୍ ସାଧାରଣ ସାର୍କଲ ଡାକ୍ତର ଶ୍ରୀ ମାୟାଧର ମାନସିଂହ ଏମ୍, ଏ, ଡି, ଇଡ୍, ମହୋଦୟଙ୍କ ଅଭିମତ)

ମହାଶୟ,

ଆପଣଙ୍କ ପ୍ରେରିତ "ଅଯୋଧ୍ୟା ପ୍ରତ୍ୟାଗମନ" ଖଣ୍ଡିକ ପାଇଲି । ଏହାତ ଆପଣଙ୍କର ମୌଳିକ ରଚନା ନୁହେଁ । 'ରଘୁବଂଶ'ର ଅନୁବାଦ ମାତ୍ର । ଅନୁବାଦ ମନ୍ଦ ହୋଇନାହିଁ । କାଳିଦାସଙ୍କ ଲେଖା ଉପରେ ମୁଁ ମତାମତ ଦେବାକୁ କିଏ ? ଇତି ।

କଟକ
୧୮-୩-୪୭

ଆପଣଙ୍କର
ମାୟାଧର ମାନସିଂହ

---o---

(ସୀତା ପ୍ରେମ ତରଙ୍ଗିଣୀ, କ୍ରାନ୍ତଲତା, ଗାନ୍ଧୀ ଗୀତା ଇତ୍ୟାଦିର ଲେଖକ ପଣ୍ଡିତ ଶ୍ରୀ ନୀଳକଣ୍ଠ ରଥଙ୍କ ଅଭିମତ)

ଆପଣଙ୍କ ପ୍ରଣୀତ 'ଅଯୋଧ୍ୟା ପ୍ରତ୍ୟାଗମନ' ଖଣ୍ଡ-କାବ୍ୟଟି ଆମୂଳଚୂଳ ପଢିଲି । ଯେଉଁ ଦେଶରେ କବି ଓ ଲେଖକମାନେ ଗୋଟିଏ୨ ଅଭିଶପ୍ତ ଜୀବ, ଆପଣ ସେହି ଓଡିଶାର ଜଣେ ଲେଖକ । କାଳିଦାସ କବିତାକୁ ଅନୁବାଦ କରି ଆପଣ କମ୍ କୃତିତ୍ୱ ଦେଖାଇ ନାହାନ୍ତି । ଆଶୀର୍ବାଦ—ଆପଣଙ୍କ ଲେଖନୀ ଜୟଯୁକ୍ତ ହେଉ !

ବ୍ରହ୍ମପୁର
୫-୨-୦୮

ଆପଣଙ୍କର
ଶ୍ରୀ ନୀଳକଣ୍ଠ ରଥ

Utkal University Office,
Cuttack,
Dated, 9-2-1948.

Registrar
Gokulachandro Satpathy.

ପ୍ରିୟ କେଶବ ବାବୁ,

ଆପଣଙ୍କ ଲିଖିତ "ଅଯୋଧ୍ୟା ପ୍ରତ୍ୟାଗମନ" ଏକାଧିକବାର ପାଠ କଲି । ଏହା ମହାକବି କାଳିଦାସ ରଚିତ "ରଘୁବଂଶ" ମହାକାବ୍ୟର ଅଂଶିକ ଉତ୍କଳାନୁବାଦ । × × ×

ଆପଣଙ୍କ ଏତାଦୃଶ୍ୟ ଉଦ୍ୟମ ସାଧୁ ଏବଂ ପ୍ରଶଂସନୀୟ । ମୋର ଆଶା ଆପଣଙ୍କ ଲେଖନୀ ଚାଳନରେ ଓଡ଼ିଆ-ସାହିତ୍ୟର ସମୃଦ୍ଧି ସାଧିତ ହେବ ।

× × × ପାଣ୍ଡୁଲିପିଟି ପଢ଼ିବାର ସୁବିଧା ପାଇ ନିଜକୁ ଧନ୍ୟ ମନେ କରୁଛି । ଇମଧିକମିତି ।

ଭବଦୀୟ ସୌଜନ୍ୟସ୍ନିଗ୍ଧ
**ଗୋକୁଳଚନ୍ଦ୍ର ଶତପଥୀ ।**



# ଅଯୋଧ୍ୟା-ପ୍ରତ୍ୟାଗମନ

ରାଜ୍ୟ ସମର୍ପଣ କରି ବିଭୀଷଣେ
ରକ୍ଷୋବୃନ୍ଦସହ ସକଳ ବିଧାନେ ।
ନିମନ୍ତ୍ରିତ କରି ପୁଷ୍ପକ ବିମାନେ
ମଧ୍ୟରେ ଆଣିଲେ ଗୃହସ୍ଥ ଯତନେ ।
ଚୌଦିଗେ ବାନ୍ଧିଲେ ଯତ୍ନେ କୋଷୀଢାଳ,
ବିବନ ତହିଁ ସଙ୍ଗେ ଫୁଲ ଫଳ ।
ପୁଷ୍ପ-ବର୍ଣ୍ଣେ ସ୍ଥୂଳ ବିମାନ ସୁନ୍ଦର
ବିତାନ-ଅଗ୍ରିତେ ଲମ୍ବିତ ଝାଲର ।
ରଥ ଶିଖେ ଶୋଭେ ବିଜୟ ଶଷ୍ଲ,
ବଇଦୂର୍ଯ୍ୟମଣି ମଣ୍ଡିତ ମଣ୍ଡୁଳ ।
ସ୍ୱର୍ଣ୍ଣ ରଜତ ପୁଷ୍ପକସ୍ୟନ୍ଦନ
ଦିବ୍ୟ ସିଂହାସନେ ଅରୋହିଲେ ରାମ ।
ରାମ ବାମ ଅଙ୍କେ ରାଜୀବଲୋଚନା
ରାଜିଲେ ହରଷେ ବୈଦେହୀ ଆସୀନା ।
କୋମଳ ପଲ୍ଲବ ସହିତ କୁସୁମ,
ବିଜଡ଼ିତେ ଶୋଭି ଅତି ମନୋରମ ?
ଯଥା ଯୋଗ୍ୟାସନେ ରାଜା ରକ୍ଷୋନାଥ
ସୁଗ୍ରୀବ ଅଙ୍ଗଦ ପ୍ରଭଞ୍ଜନସୁତ ।

ରାଘବ ସମୀପେ ଅସୀନ ଲକ୍ଷ୍ମଣ,
ନଳ ନୀଳ ଅଙ୍ଗଦ ଜାମ୍ବବ ସୁଷେଣ,
ଧରଷେ ଚଢ଼ିଲେ କେତେ କପିବର
ଭୃଷଚାଣ୍ଡ ସହ ନଙ୍କେତେ ରକ୍ଷୋ ବୀର ।
କେତେ ଯେ ବାଜିଲା ସ୍ୱଷସ୍-ବାଦେଜଣୀ,
ରକ୍ଷୋ ନାରୀକୁଳ ଅର୍ଘ୍ୟଦେଲେ ଅଣି !
ସୁରଗଣେ ମିଳି କଲେ ଜୟଗାନ,
କଲେ ଘନ ଘନ କୁସୁମ ବର୍ଷଣ ।
ଅନନ୍ତର ପୁଷ୍ପବିମାନ ସରଗେ
ଧାଇଁଲା ଅବଧ ମୁଖେ ବାୟୁ-ବେଗେ ।
ବାଦଳ ବିମୁକ୍ତ ନିର୍ମଳ ଗଗନେ
ବିସ୍ତୃତ ସୂର୍ଯ୍ୟ ପ୍ରଦୀପ୍ତ କିରଣେ
ତଥା ହିରଣ୍ମୟ ଶୋଭିତ ବିମାନ
ସ୍ୱ-ତେଜ ବିସ୍ତାରେ ହେଲା ଅନୁପମ
ନୀଳ ଅକାଶର ସୁଧାକର ପରି
କଦକ ସୌରଭେ ତଥା ଗୃପଂଶି
ସୁଧର୍ମା ବକାଇ କବା ଅଣାଇଲା
ଯାହାର ସୁଷମା ଅତୀବ ମଞ୍ଜୁଳ ।
ବିମାନେ ଅବୃତ ପଲ୍ଲବ ଝାଲର,
ବାତ ପ୍ରକମ୍ପନେ ଡାଳେ କି ସୁନ୍ଦର ।
ପବମାନ ଘାତେ ବିଜୟ-କେତନ
ଫର ଫର ଅନ୍ଦୋଳିତ ଅନୁକ୍ଷଣ ।

ରାମ କରେ ଶୋଭେ ଦିବ୍ୟ ଶରାସନ,
ଯାହାର ଟଙ୍କାରେ ସ୍ତମ୍ଭିତ ଭୁବନ ।
ଶଙ୍କର କାର୍ମୁକ, ଜାମଦଗ୍ନ୍ୟ ଗୁଣ,
କୁସୁମ ନାଳଦଣ୍ଡ ଯାହା ଅନୁରୂପ !
ଶକ୍ତି ଶରାସନ ଅତୁଳ ମହିମା
ଯେତ ଢଙ୍ଗରେ ରକ୍ଷିଛି ସୁଷମା ।
ଶିରେ ଜଟାଜୁଟ ଧୂର୍ଜଟୀ ସମାନ,
ପୃଷ୍ଠେ ବନ୍ଧା ତୂଣୀ ବୀର ପରଧାନ ।
ଭ୍ରାତୃ ସ୍ନେହ ଭରେ ଆତ୍ମୀୟ ଲକ୍ଷ୍ମଣ,
ବନବାସେ ଅଛି ଭ୍ରାତାର ସମାନ ।
ରାବଣ ଭବନେ ଜନକ-କୁମାରୀ,
ରଜନୀବାସରେ ରାମ ନାମ ସ୍ମରି;
ପ୍ରତିପଦଥିର ଚନ୍ଦମା ସଦୃଶ,
କ୍ଷୀଣ ହେଲା ତନୁ ଲଭି ବହୁ କ୍ଲେଶ ।
ତପନ ବିରହେ କମଳିନୀ ପରି,
ହତାଦରେ ସବୁ ଯାଇଛି ମଉଳି ।
ପ୍ରତିଭାତ ଦେଖି ବାଳାର୍କ ମଣ୍ଡଳ
ସୂର୍ଯ୍ୟମୁଖୀ ମନେ ଆନନ୍ଦ ବିହ୍ୱଳ ।
ସ୍ମିତ ଗଦ ଗଦ ନମ୍ରତା ସୁଲଭେ,
ନୁଅଇଲେ ମଥା ସଲଜ୍ଜ ଧୈରଯେ ।
ଅଗ୍ନି ପରୀକ୍ଷିତା ବୈଦେହୀ ବଦନ,
ନତ ହେବା ଦେଖି ଲଜ୍ଜନ୍ତି ଶ୍ରୀରାମ ।

"ଦେଖ ଦେଖ ନଣନ୍ଦିନୀ, ଗଙ୍ଗାସାଗର
ଗୃହନାବଳୀ ଦିଶେ ସୁଶୋଭିତ
ଶାରଦୀୟ ନକ୍ଷତ୍ରମଣ୍ଡଳ ଯେସନ,
ରମଣୀୟ ନଗ୍ରୀ କରଇ ଧାରଣ;
ଫେନ-ପୁଞ୍ଜ-ବିରାଜିତ ଅମ୍ବୁମାଳା
ଠାରୁ ମାଲଦ୍ୱୀପ୍ ପର୍ଯ୍ୟନ୍ତ କେବଳ
ମଦୀୟ କୀର୍ତ୍ତି ଦୀର୍ଘ ସେତୁ ଦ୍ୱାର
ଦ୍ୱିଭାଗ ଅଭଙ୍ଗେ ସୁଶୋଭିତବକ୍ଷ ।
ପୂର୍ବେ ଅସ୍ମଦ୍‌ବଂଶେ ସଗର ସଜ୍ଜନ,
ଅଶ୍ୱମେଧ ଯଜ୍ଞ କଲେ ଆୟୋଜନ ।
ମେଧ୍ୟ ହୟ ଶକ୍ର ହରିନେଲେ ଅପେ
ବାନ୍ଧିଲେ ପାତାଳେ କପିଳ ସମୀପେ ।
ଯଜ୍ଞ ଅନ୍ୱେଷଣେ ସଗର ସନ୍ତାନେ,
ତତ୍ପରେ ଚଳିଲେ ପାତାଳ ଭୁବନେ ।
ମୁନିପାଶେ ଦେଖି ଯଜ୍ଞୀୟତୁରଙ୍ଗ
ତାପସ ଅକ୍ରମେ ହୋଇଲେ ଅବେଗ ।
ଯାର ଅଭିଶାପେ କୁମର ସକଳ
ହୁତାଶନେ ଦଗ୍ଧ ହେଲେ ଅବିରଳ ।
ଭଗୀରଥ ଆଣି ପବିତ୍ର ଧୂଳା
ପିତୃଗଣ ପରିତ୍ରାଣେ ଯାଂସ ଦେଲ ।
ଉତ୍ପନ୍ନ ସେଦିନୁ ବିସ୍ତୀର୍ଣ୍ଣ ଜଳଧି
ଯାର ଗର୍ଭେ ମଣି-ମୁକ୍ତା-ପ୍ରବାଳାଦି

ପଦ୍ମପୂର୍ଣ୍ଣ ହେଲେ ଅମୂଲ୍ୟରତନ
ବିଶ୍ୱପ୍ରହ୍ଲାଦନ ଚନ୍ଦ୍ରମା ଜନମ
ବାଡ଼ବ-ଅନଳ ଯହିଁ ଅନ୍ତରେ ସଞ୍ଚିତ
ବହୁଳ ଉତ୍ତାପ ଦ୍ୱୀପ ବିକ୍ଷୋଭିତ ।
ମହାର୍ଣ୍ଣବ ଜଳ ଗ୍ରହଣେ ମିହିର
ରଚଇ ମେଘର ସୃଷ୍ଟି ନିରନ୍ତର ।
ପାରାବାର ଅଦ୍ଭୁତନ ପରିମାଣ,
ଗଣନା ନୁହଇ ସହଜ ସାଧନ ।
ଜଳପ ଅନ୍ତରେ ପୂର୍ବଣପ୍ରତ୍ୟକ୍ଷ
ସମସ୍ତ ସଂହାରେ ଲକ୍ଷଣ ହରଷ,
ଏହି ସଲିଳଧି ମଧ୍ୟେ ଯୋଗନିଦ୍ରା-
ବଶେ ଅଭିଭୂତ ହୁଅନ୍ତି ସର୍ବଦା ।
ଇନ୍ଦ୍ର ଯେତେବେଳେ ହୋଇଣ କୁପିତ
ବଜ୍ରକୁ ପ୍ରହାରି ବିନାଶେ ପର୍ବତ;
ପକ୍ଷଚ୍ଛେଦ ଭୟେ ଶତ ଶତ ଗିରି
ସମୁଦ୍ର କୋଡରେ ଅଶ୍ରାନେଲେ ଡ଼ରି ।
ବିଷ୍ଣୁ ବରାହରୂପୀ ଭଗବାନ
ପୃଥ୍ୱୀ ରସାତଳୁ କଲେ ଉତ୍ତୋଳନ !
ଯେତେବେଳେ ଏହା ଜଳ ହୋଇ ସ୍ଫୀତ
ପୃଥ୍ୱୀର ଅବଗୁଣେ ଶୋଭିତ ।
ଶତ ଶତ ନଦୀ ସମୁଦ୍ରେ ପତିତ,
ତେଣୁ ସରିତ୍ପତି ନାମେ ଅଭିହିତ ।

(୨)

ପ୍ରିୟେ ! ଦେଖ, ଊର୍ମିଗଣ ନଦୀମୁଖେ
କଦନ ବ୍ୟାଦାନେ ଯାଉଛନ୍ତି ସୁଖେ ।
ଜଳଚର ପ୍ରାଣୀ ସହସ୍ର ସକଳ
ପାନକରି ସୁଖ କରନ୍ତି ବହଳ;
ମସ୍ତକରେ ଧରା ରନ୍ଧ୍ରବାଟେ ଜଳ
ନିର୍ଗମନ ହୋଉଅଛି ଅବିରଳ ।
ଜଳହସ୍ତୀମାନେ ଏଅନ୍ତେ କପଟ
ଭ୍ରମ ଫେନରାଶି ମଧ୍ୟ ଭେଦକରି
ସମୁଦ୍ର ଗର୍ଭରୁ ହୁଅନ୍ତି ଉତ୍ଥିତ,
ଜନକ ନନ୍ଦନୀ ଭଳି ଦୃଷ୍ଟିଗତ !
ଶୁଭ୍ର ଫେନ ପୁଞ୍ଜ ଛଟୋଳେ ତାଙ୍କର
ଲାଗି ଶୋଭେ ଯଥା ଶ୍ରବଣଚାମର ।
ସୁପ୍ରକାଣ୍ଡ ସାମୁଦ୍ରିକ ସର୍ପମାନେ
ବେଳାନିଳଗାନ ଶମିତ୍ର ଛେସନେ
ଶିର-ଅଭିମୁଖେ କରନ୍ତି ଭ୍ରମଣ
ଗଗନେ ଭ୍ରମନ୍ତି ଯେସନେ ପକ୍ଷିଗଣ ।
ସାଗର ହିଲ୍ଲୋଳ-ଅବଳି ପ୍ରକାର
ଐକ୍ୟ ଅଟେ ସିନା ସର୍ପଙ୍କ ଆକାର ।
ଧୀର-ଭର-ପାଟେ ଫଣାସ୍ଥିତ ମଣି
କାଳ୍ପନ୍ୟମାନ ସେ ଫଣୀ ବୋଲି ଜାଣି ।
ତାହାଙ୍କ ଶଙ୍କାପୂର୍ଣ ଧରଙ୍ଗଚାଳନେ
ବପସାସ୍ତ୍ରଭ୍ରବେ ପଡନ୍ତି ପୁଳିନେ ।

ଅତଳସ୍ପର୍ଶ ସୈକତରୁ ବହିର୍ଗତ
ହୋଇ ପୁଣି ହେଲେ ମିଶନ୍ତି କପୋତ ।
ଧୂମ୍ରଜାଲ ବାଷ୍ପୀଭୂତ ମେଘରୂପେ
ଉପରକୁ ଉଡୁଅଛନ୍ତି କରୂପେ ?
ପୂର୍ବେ ମହାର୍ଣ୍ଣବେ ଦେବାସୁର ମିଳି
ମନ୍ଦର ଗିରିଟିଏ ଦେଇଥିଲେ ଦଳି ।
ପ୍ରଥମେ ଶ୍ରୀ ଲଭିଲେ ରୁକ୍ମିଣୀ,
ଗରଳ ଲଭିଲେ ଏଭା ଶୂଳପାଣି ।
ସାଗର ଲଘନେ ପ୍ରଭଞ୍ଜନ ବଳେ
ଅର୍ଣ୍ଣବୁ ବାହାର ମୈନାକ ଶୈଳ;
ପଥମଧ୍ୟେ ହନୁ ସାହାଯ୍ୟ ନିମନ୍ତେ
ଗଗନକୁ ଉଠି ବହୁଳ କିରଣେ ।
କପି-ସେନା-ମିଳି ଦୁସ୍ତର ସାଗର
ବନ୍ଧନେ ପ୍ରଚଣ୍ଡ ସେତୁ କଲେ ସ୍ଥିର ।
ପର୍ଣ୍ଣମୃଗେ ଅଙ୍ଗୁ ସ୍ୱାଢ଼ ସଙ୍କେତ
ବର୍ଦ୍ଧନେ ଇଉତ ଥିଲେ ଅବିରତ ।
ପ୍ରିୟେ ! ଦେଖ ଦେଖ ଏଅଡ଼େ ଉପର
ସ୍ୱନୀଳ ଅମ୍ବୁଚ୍ଛ ନବଳାଭୂମି ଧର-
ବ୍ୟାପି ବଦ୍ୟାପାନ ସେତୁ ମନୋହର
ଭୀଷଣ ଗର୍ଜ୍ଜନେ କମ୍ପିତ ସାଗର ।
ଶୀତଳ ସମୀର ପ୍ରବାହେ ଭ୍ରମର,
ଅଳକ କମ୍ପିତ ତୁଏ ସମାବର !"

ଗୁହ୍ଁ ଗୁହ୍ଁ ରଥ ମୃଦୁ ଭିଜ ବେଳେ
ଅସି ଉପସ୍ଥିତ ସାଗରୋପକୂଳେ ।
“ଚାହଁ” ବୋଲି ସୀତା ବଦନ ଫେରଇ
ଅଳପ ହସିଲେ ସମ ମୁଖୀ ଗୁହ୍ଁ ।
“ଏଠାରେତ ନାହିଁ ଦୀର୍ଘ ମହାର୍ଣ୍ଣବ
ପ୍ରାଣପ୍ରିୟ! ଯାହା କହିଲ ବାସ୍ତବ ?”
ସିନ୍ଧୁ ଉତ୍ସଙ୍ଗେ ପୁଷ୍ପକ ବିମାନ
ଅନନ୍ତର ଚଳେ ଶୋଭି ରମ୍ୟମାନ ।
“ପୁଳିନ ପ୍ରଦେଶ ଶୋଭା ରମଣୀୟ
ଅବସ୍ଥାର ଯାର ଅଦ୍ଭୁତ ଅଶସ୍ୱ ।
ଫେନ ଧୌତ ସଦା ତଟେ କି ସାଗର,
ଶୋଭା ମଥାସିଷ୍ଟେ ଅଗସ୍ତ୍ୟ ସମୁର,
ନବସୀ-କୁସୁମ-ମାଲ୍ୟ ଧବଳରେ
ପୂଜନେ ବ୍ରହ୍ମ ଅଶେଷ ସନ୍ଧରେ,
ମୋର ସମାଗମେ ପୂର୍ବେ ନିରତ
କେଶବଙ୍କୁ ଯଥା ଭଜେ ସୁରନାଥ ।
ଶୁକ୍ତି ମଧ୍ୟୁ ମୁକ୍ତାଫଳ ନିର୍ଗତ
ଶୋଭ ଚତୁର୍ଦ୍ଦିଗେ ହୋଇଛି ବିକ୍ଷିପ୍ତ ।
କାହିଁ ଫଳଭରେ ପୂଗତରୁ ଶ୍ରେଣୀ,
ମନୋହର ବେଶେ ହୋଇଛି ଅଗ୍ରଣୀ ।
ପଶ୍ଚାଦେଶେ ଥରେ ଦୃଷ୍ଟିପାତ କର
ଅନ୍ୟେମାନେ ଯେତେ ହେଉଁ ଅଗ୍ରସର

ତୀର ଭୂମି ହୋଇ ବନ୍ଧୁ ଦୂରବର୍ତ୍ତୀ
ପ୍ରଣତେ ମାଗଇ ବଦାନ୍ୟ ସମ୍ପ୍ରତି ।
ପୁଷ୍ପକ ବିମାନ ମୋର ଅଭିଳାଷ
ଅନୁସାରେ ଗତି କରଇ ବିଶେଷ ।
ଲଷ୍କର ଦେଖି ମେଘପଥେ ଭେଦେ,
ଚଳି ଯାଉଅଛୁ ସୁରମ୍ୟ ଗଗନେ ।
ମୃ ଧାରକରଣ-ଗତପଥେ ବେଗେ,
ଉଡ଼ି ଯାଉଅଛି ଅଙ୍କାର ଗହ୍ୱରେ
ଦେ ନବବାସୀମାନଙ୍କର ପଥେ,
ଯିବାରୁ ଗୋତ୍ରାନ୍ତ ଦେଖି ପକ୍ଷୀଯୂଥେ
ସଦାଦ ପ୍ରଦାନେ ଅନନ୍ତ ବନ୍ଧନ ?
କେତେ ଅନ୍ୟ ଦରଶନେ ଅଗମନ ?
ଏବେ ମନ୍ଦାକିନୀ ଶୀତଳ ଶୀକର
ବାୟୁ ଅଭାଶନ୍ତୁ ବହେ ନିରନ୍ତର ।
ଅଙ୍ଗ ସ୍ପର୍ଶେ ଅଟ୍ଟ ମଧ୍ୟାହ୍ନକାଳୀନ-
ସ୍ୱେଦବିନ୍ଦୁ ମୁକ୍ତ କରଇ ହରଣ ।
ତୁମ୍ଭେ କୌତୁକିନୀ ହୋଇ ସଚପଳା-
ଅଭ୍ରମାଳା ସ୍ପର୍ଶେ ହେବାରୁ ଚପଳା;
ହସ୍ତ ପ୍ରସାରଣ କରନ୍ତେ ଝଡ଼ରେ,
ମେଘ ଅନ୍ତ୍ରବନ୍ତ୍ର ଟେଳା ତାହାର,
ବିଦ୍ୟୁତ ବଳୟୁ ହାସ ତ୍ରୁଟି କର,
ଝମଣ୍ଡି ଭିତରେ ଦେଖ ସମାବର !

ଅସ୍ତ ଅମୋଦନର ଶାଦ୍ୱଳ କାନନ,
ସଷ୍ପ-ସଙ୍କୁଳ ସେହୁ ଜନସ୍ଥାନ ।
ସତତ ପୁଣ୍ୟାତ୍ମା କଉପୀନମାନଙ୍କ
ମୃଗବୃନ୍ଦ ଏଥି ଅଛନ୍ତି ଶୋଭନ ।
ଷଦ୍ୱଣୂନ୍ୟ ହୋଇ ଶର ପରତ୍ୟକ୍ତ
ନିଜ ଆଶ୍ରମରେ ହୋଇ ଉପଗତ ।
ନବ ନବ ପର୍ଣ୍ଣଶାଳା ଧୂନଥ କରି,
ସୁଖେ ବାସ କରୁଛନ୍ତି ମହର୍ଷି ।
ମନ୍ଦିର ସମ୍ମୁଖେ ଅର୍ଚ୍ଚନା ମଣ୍ଡପ ।
ନିର୍ମାଣେ ଯେ ଯାର ଏକା ଅନୁରୂପ ।
ଦେବଶିଳ୍ପୀ କରେ ଦେଇଅଛି ତୋଳି
ବନସ୍ତ୍ରେ ଆଶ୍ରମ ସର୍ବ ଏକାଭଳି ।
ଏହି ସମ୍ମୁଖରେ ମାଲ୍ୟବନ୍ତ ଗିରି-
ଅଭ୍ରଙ୍କଷ ଶୃଙ୍ଗ ଦିଶଇ ଉପରି ।
ନବ ଜଳଧାର ବରଷା ଆଗମେ,
ପର୍ବତ ଶିଖରେ ବର୍ଷିଲ ସେଦିନେ ।
ଦୁଃଖୀ ହୋଇ ତୁମ୍ଭ ବିରହେ ଅଧୀର
ଅଶ୍ରୁଧାର ବିସର୍ଜିଲ ନିରନ୍ତର ।
ଏହି ସ୍ଥାନେ ସଖି ! ଅବସ୍ଥାନ ବେଳେ
ଜଳଧାର ସିକ୍ତ ବନ ସେତେବେଳେ ।
ଉତ୍ଫୁଲ୍ଲ ପ୍ରାନ୍ତର କଦମ୍ବ କେଶର,
ଅର୍ଦ୍ଧ ବିକଶିତେ ଗନ୍ଧ ମନୋହର ।

ମୟୂର କୁଳର କେକାରବ ସ୍ୱତଃ
ଦୋଏ ଦେଉଥିଲା ସବୁ କଷ୍ଟବତ୍ ।
ଘନ ବର୍ଷଣର ଗମ୍ଭୀର ଗର୍ଜନ
ଗିରିଗୁହା ପ୍ରତିଧ୍ୱନିତ ନିସ୍ୱାଣ,
କରି ଉଠୁଥିଲା ମୋ ବକ୍ଷ ବିଦୀର୍ଣ୍ଣ,
ପୂର୍ବ କଥାମାନେ ହୋଇଲା ସ୍ମରଣ ।
ମେଘ ଗରଜନ କାଳେ ତୁମ୍ଭେ ବୀର,
ସଙ୍କେତେ ଅଶେଷ କଲ୍ କିବା ଧୀର !
ଦେଖ ଏହୁ ଉପବନ କିଷ୍କିନ୍ଧ୍ୟାର
ଛତ୍ରପତି ଏଥି ସୁଗ୍ରୀ ମିତ୍ରବର ।
ଯାର ସାହାଯ୍ୟରେ ଋକ୍ଷ କପିଗଣ,
ସଗର୍ବେ ସାଗର କଲେ ବିବନ୍ଧନ ।
ଯାର ଅଙ୍କବଳେ ପାବନୀ ତୁମ୍ଭର
ସନ୍ଦେଶ ନିମିତ୍ତ ଲଙ୍ଘିଲା ସାଗର ।
ସୁଷେଣ ଜାମ୍ବବ [illegible] ଲକ୍ଷ୍ମଣ,
ଶକ୍ତିଭେଦୁଁ ଉଠି ପାଇଲେ ଜୀବନ ।
ବାଳୀର ନନ୍ଦନ ଅଙ୍ଗଦ ମର୍କଟ
ରାବଣ ଶିରରୁ ଅଣିଲା କିରୀଟ ।
ଏହୁ ଋଷ୍ୟମୂକ ପର୍ବତେ ସୁଗ୍ରୀବ
ସହ ତୁମ୍ଭ ଅଶେଷ କଲ ମିତ୍ରଭାବ ।
ପମ୍ପାସରୋବର ସମ୍ମୁଖେ ସଜ୍ଜିତ,
ଶତଦଳ ସାରସାଳି ସୁଶୋଭିତ ।

ତୁମ୍ଭ ବିରହରେ ବିଷଣ୍ଣ ମାନସେ
ଏହା ତୀରଦେଶେ ଭ୍ରମିଲି ନୀରସେ ।
ସତୃଷ୍ଣ ନୟନେ ଦେଖିଲି ସଲିଳେ
ମୀନ ଯୂଥ ସୁଖେ ଖେଳନ୍ତି ଉତ୍ତାଳେ ।
ନୟନ-ଜଳରେ ବକ୍ଷଃସ୍ଥଳ ମୋର
ଦେଖି ଅଭିଷିକ୍ତ ହେଲା ବାରମ୍ବାର ।
ଏସ୍ଥାନେ ଶବରୀ ଭେଟ ହେଲା ଦିନେ,
କବନ୍ଧ ଅସୁରକୁ ଛେଦେ ଏହି ବନେ ।
ତାହାକୁ ମାରନ୍ତେ ଦିବ୍ୟରୂପ ଧରି
କହିଲା, 'ରାବଣ ନେଲା ସୀତା ହରି ।'
ଏହି ସ୍ଥାନେ ଦେଖି ରାବଣ ବିମାନ,
ଜଟାୟୁ ଭଙ୍ଗିଛି ହୋଇ କୋପମନ ।
ଛିନ୍ନପକ୍ଷେ ପଡ଼ି କଣ୍ଠାଗତ ପ୍ରାଣେ
ମୋର ନାମ ସ୍ମରୁଥିଲା ମନେ ମନେ ।
'ରାବଣ ସୀତାକୁ କରିଛି ହରଣ,'
ସମ୍ବାଦ ପ୍ରଦାନେ ତ୍ୟାଗକଲା ପ୍ରାଣ ।
ତଦ୍ଦର୍ଶନେ ପିତୃ-ଶୋକ ନାନୀଭୂତ
ମନରେ ଉଠିଲା ହୋଇ ଘନୀଭୂତ ।
ପ୍ରିୟେ, ତୁମ୍ଭ ଅନ୍ୱେଷଣ କରୁ କରୁ,
ଚରଣ ନୂପୁର ପାଇଲି ଏଠାରୁ ।
ବାକ୍ ଶକ୍ତିହୀନ, ଏହି ଲଜ୍ଜାନନ
ମୋଠାରେ କଙ୍କଣା ଦର୍ଶାଇଲେ ଧ୍ୟାନେ ।

ଶାଳ-ଗଜ ସବୁ କରି ଅବନତ
ଦେଖାଇଲେ ତୁମ୍ଭ ହର ନେବା ପଥ ।
ଏଣିଗଣ ବୃନ୍ଦ ଛାଡ଼ି ତେଜାଣ
ମୋର ଶୋକାକୁଳେ ଚାହିଲେ ନୟନ ;
ଦକ୍ଷିଣାଭିମୁଖେ କରି ପ୍ରବର୍ତ୍ତି
ଜଣାଇଲେ ଯାଅ ଏ ପଥେ ଭୃଗତ ।
ଦେଖ ଗୋଦାବରୀ ସାରସମାଳିକା,
ଚମାନ ନକ୍ଷତ୍ର ହେଲେ କେତେ ଦକ୍ଷା ।
ଲମ୍ବିତ କର୍କିଣି ଶବ୍ଦ କଣି କଣି
ଶୁଣି ଜାନକଲେ ସ୍ତ୍ରୀସୁ ଯୂଥ ଧ୍ୱନି ।
ଶ୍ରେଣୀବଦ୍ଧ ହୋଇ ଗଗନ ମାର୍ଗକୁ
ଉଡ଼ ଅପୁଛନ୍ତି ଅମ୍ଭେ ଦେଖୁ ଦେଖୁ ।
ଦେଖ ପଞ୍ଚବଟୀ ଅଜ ବହୁଦନେ
ସମ୍ପୂର୍ଣ୍ଣ ହେଉ ପ୍ରୀତ ହେଲେ ମନେ ।
ଅଶ୍ୱତ୍ଥ, ଅଶୋକ, ବିଲ୍ୱ, ଧାତ୍ରୀ ବଟ,
ଦାଶଇ ଲକ୍ଷ୍ମଣ ନିର୍ମିତ ମଣ୍ଡପ ।
ଦଣ୍ଡକା-ଅରଣ୍ୟେ ଏହି ବନ ଶ୍ରେଷ୍ଠ
ଏଠାରେ ତୁମ୍ଭଙ୍କୁ ହରିଲା ପାପିଷ୍ଠ ।
କୃଶକଟୀ ତୁମ୍ଭେ ଘଟଜଳ ଧରି
(କେତେ) ବାଳ ଅମ୍ର ବୃକ୍ଷେ ଦେଇଥିଲ ବାରି ।
ତୁମ୍ଭର ପାଳିତ କୃଷ୍ଣସାରଗଣ
ଊର୍ଦ୍ଧ୍ୱମୁଖେ ଚାହିଁ ଅଛନ୍ତି ଚମାନ ।

ଏଠି ସୂର୍ପଣଖା ନାସା କର୍ଣ୍ଣ ହୀନ,
ଏହି ସ୍ଥାନେ ଦୈତ୍ୟ ସଙ୍ଗେ ଘୋରରଣ ।
ଏଠି ହତ ଖର ତ୍ରିଶିର ଦୂଷଣ
ଚଉଦ ସହସ୍ର ନିଶାଚରଗଣ ।
ବଳାସ୍ପିନ ଭେଳିଛଳସୀ ଜାନକୀ !
ସ୍ୱର୍ଣ୍ଣମୃଗ ଏଠି ଚଳିଭଙ୍କଲ ଦେଖି ।
ଦେଖ ଏଠି ବନଶୋଭିନ କରତେ,
ମାରଚ ନାଶିଲ ରୁମ୍ବର ଶମିବେ ।
ହିନ୍ଦେ, ଏହି ଗୋଦାବରୀ ତୀରବର୍ତ୍ତୀ
ବେତସ କୁଞ୍ଜକୁ କରଥିଲ ପ୍ରୀତ !
ମୃଗୟାରୁ ଫତ୍ୟାବୃତ୍ତ ହୋଇ ଦିନେ,
ତୁମ୍ଭ କୋଡ଼େ ଶିର ସ୍ଥାପିଲ ଯତନେ ।
ସୁଖେ ନିଦ୍ରା ଯାଇ ସ୍ମୃତ ପରେ ତାହା
ଅଦ୍ୟାବଧି ଜାଗରୂକ କରେ ଅହା ।
ପ୍ରାଣେଶ୍ୱର, ଏଣେ ବାରେ ଦେଖିବତ,
ଦଶଇ ସମ୍ମୁଖେ ମହେନ୍ଦ୍ର ପର୍ବତ !
ଜମଦଗ୍ନି ସୁତ ବୀର ପରଶୁରାମ,
ନିରନ୍ତର ଯାର ବାସ ପୁଣ୍ୟସ୍ଥାନ ।
ଯା' ଶିଖରେ ବସି ଦିନେ ପୁଷ୍ପାବାର,
ଦକ୍ଷୀପନ୍ନପଦ ପୂଜିଲେ ଶଙ୍କର !
ଶିଖର ସ୍ପର୍ଶେ ସଦା ମେଘମାଳ,
ଫୁଲ୍ଲାଚଳ ମଧ୍ୟେ ସେତୁ ମଣ୍ଡଳ !

ତପସ୍ୱିନୀ ! ଦେଖ ମୁନିଗଣ ଶ୍ରେଷ୍ଠ
ଅଗସ୍ତ୍ୟ ଆଶ୍ରମ ହୁଏ ପରିଦୃଷ୍ଟ ।
ନହୁଷ ନୃପତି ଯାଙ୍କ କୋପାନଳେ
ହୋଇଲେ ଇନ୍ଦ୍ରତ୍ୱୁ ପରିଭ୍ରଷ୍ଟ ହେଳେ ।
ଯାର ପୂତହୋମ ଧୂମରେଖା ଅସ୍ପ,
ଅଭ୍ରମାଳା ମଧ୍ୟେ କେତେକେ ଯାଏମିଶି ।
ଅଦୂରେ ମହର୍ଷି ଶାତକର୍ଣ୍ଣିଙ୍କର
କାନନବେଷ୍ଟିତ କ୍ରୀଡ଼ା-ପଞ୍ଚାପ୍ସର ।
ଜଳଦାବେଷ୍ଟିତ ଚନ୍ଦ୍ର ପ୍ରାୟ
ଦିଶଇ ଦୂରରୁ ଅତି ରମଣୀୟ ।
ପୂର୍ବ କାଳେ ଋଷି ଦର୍ଭାଙ୍କୁର ଭକ୍ଷି
କଠୋର ତପସ୍ୟା କଲେ ଲକ୍ଷ ବର୍ଷ ।
ଶଙ୍କାକୁଳେ ଶକ୍ର ତପୋବଳୁ ଅତେଶ,
ଅପ୍ସରା ପାଞ୍ଚଟି ପେଷିଲ ହରଷେ ।
ମୁନିଙ୍କ ସମାଧିଭଙ୍ଗରେ ସେମାନେ
ଲଭିଲେ କୃତତ୍ୱ ଅବଧି ଯତନେ ।
ଜଳମଧ୍ୟବର୍ତ୍ତୀ ପ୍ରାସାଦେ ତଥାପି
ତାଙ୍କ ଧୃତ ରତ ଖେଳାନ୍ତି ଅଦ୍ୟାପି ।
କ୍ରୀଡ଼ା କଉତୁକ ମୃଦଙ୍ଗ ବାଦନ,
ଲଳିତ ସଙ୍ଗୀତ ଧ୍ୱନି ଏହୁ ଶୁଣ ।
ଅମ ଦେବ-ପୁଷ୍ପ-ରଥ-ଚନ୍ଦ୍ରଶାଳା,
ଦ୍ରୁତ ନିନାଦରେ ଅତ୍ୟନ୍ତ ଚଞ୍ଚଳା ।

ପ୍ରିୟତମା ! ଏଣେ ତବ ଦୃଷ୍ଟିଗତ,
ଦେଖ ଅନ୍ୟଜଣେ ତପସ୍ୱୀ କମ୍ପିତ ?
ପ୍ରଚଣ୍ଡ ମାର୍ତ୍ତଣ୍ଡ ସମ୍ମୁଖ ନିରେଖି,
ପବନ ସାଧନେ ସମସ୍ତ ଉପେକ୍ଷି ;
ଅଗ୍ନି ଚତୁଷ୍ଟୟ ମଧ୍ୟେ ଅବସ୍ଥାନ,
କରନ୍ତି କଠୋର ତପଃ ଆଚରଣ ।
ସୁତୀକ୍ଷ୍ଣ ଋଷିଙ୍କ ଉଗ୍ର ତପେ ଭୀତ
ହୋଇ ଆଖଣ୍ଡଳ ସର୍ବଦା ଚକିତ ।
ଏହାଙ୍କ ସମାଧିଭଙ୍ଗର ଉଦ୍ଦେଶ୍ୟ
ସୁରାଙ୍ଗନା କେତେ ପଠାଇଲେ ଶେଷ ।
ହାବଭାବ ବିଲାସ ଚେଷ୍ଟାରେ ତାଙ୍କର,
ଜନମିଲ ନାହିଁ ମାନସ ବିକାର ।
ସସ୍ମିତ କଟାକ୍ଷ ନିପାତ କରନ୍ତେ
ଅଚିରେ ବିଧ୍ୱସ୍ତ ହୋଇଲ ସେଠାକ ।
ମହର୍ଷି ସୁତୀକ୍ଷ୍ଣ ମୁନିଗଣେ ସାର,
ମୌନବ୍ରତ ଅବଲମ୍ବୀ ଧୀରସ୍ଥିର ।
ମୂର୍ତ୍ତ ଅକ୍ଷମାଳା-ବଲ୍କଳ-ମଣ୍ଡିତ
ଦକ୍ଷିଣ ବାହୁକୁ କର ପ୍ରସାରିତ ।
ଶିରଃକମ୍ପ ଦ୍ୱାରା ପ୍ରଣାମ ସମାଦର
ଗ୍ରହଣେ ରହିଲେ ସୂର୍ଯ୍ୟେ ପୁନର୍ବାର ।
ଶରଭଙ୍ଗ ଋଷି ପୁଣ୍ୟତପୋବନ
ଏଥରେ ଦେଖଇ କର ନିରୀକ୍ଷଣ ।

ପୂର୍ବ୍ୟାଗ ମହର୍ଷି ବହୁକାଳାବଧି
ସମିଧାଦ ଦ୍ୱାରା ଅଗ୍ନି ତୃପ୍ତି ସାଧି ;
ଯେ କ୍ଷେତ୍ରେ ସ୍ୱୀୟ ମନ୍ତ୍ର ପୂତ କଲେବର,
ଅନଳେ ଅହୁତି ଦଲେ ସତ୍କାର ।
ତାର କୋଣାନ୍ତରେ ଆଶ୍ରମ-ପାଦପ
ଛାୟାଦାନେ ହରେ ପଥିକ-ସନ୍ତାପ ।
ପୁଣି ସ୍ୱାଦୁ ଫଳଦାନେ ବୃକ୍ଷପଂକ୍ତି
ସେମାନଙ୍କ କ୍ଷୁଧା କରଇ ନିବୃତ୍ତି ।
ଯୋଗ୍ୟ ପୁଷ୍ପଗଣ ତୁଲ୍ୟ ତପୋବନେ
ଅତିଥି ସତ୍କାର କରନ୍ତି ଯତନେ ।
ଏବେ ଦେଖି ଦେଖି ଗିରି ଚିତ୍ରକୂଟ
ହୋଇଲ ସେଠାରେ ରାଘବଙ୍କ ଭେଟ ।
ଗୁହାମୁଖ ନିରନ୍ତର ପ୍ରସ୍ରବଣ—
ପତନ ଧ୍ୱନିରେ ଶବ୍ଦାୟମାନ ।
ଶୃଙ୍ଗାଗ୍ର ଭାଗରେ ମେଘମାଳ ଘନ
ସଂଲଗ୍ନ ଥିବାରୁ ଦଶଇ ଯେସନ;
ବପ୍ର କ୍ରୀଡ଼ାସକ୍ତ ବୃଷଭ ସମାନ
ନୟନର ପ୍ରୀତି କରେ ସମ୍ପାଦନ ।
ଦେଖି ଚିତ୍ରକୂଟ ସମୀପବର୍ତ୍ତିନୀ
ପ୍ରସନ୍ନ ମିଠ ସ୍ରୋତ ମନ୍ଦାକିନୀ ।
ଯଦ୍ୱାରା ଦୂରରୁ ଧରଣୀ-ରମଣୀର
କଣ୍ଠ-ଅଲମ୍ବନ ମୁକ୍ତାମୟହାର ।

ଦେଖ ଏହିସ୍ଥାନେ ବୁଲି ଖେଳି ଅସି
ସ୍ଫଟିକ ଉପଳେ ଶଭଧାରେ ବସି;
ଗେରୁ ଘୋର ମୁହିଁ ଦେଲି ତୁମ୍ଭ ଭାଲେ,
କପି ଭୟେ ପୋଛାଇଲ ମୋତେ ବଳେ
ଲଗେ ତୁମ୍ଭ ଭାଲ ଚିତା ମୋର ଦେହେ,
କରତାଳି ମାରି ହସିଲ ଅଥୟେ ।
ପ୍ରେମଭରେ କେବେ କରି ଆଲିଙ୍ଗନ
ସ୍ନେହେ କହେ ମୁହିଁ ପଣ୍ଡ ତୁମ୍ଭେ ପ୍ରାଣ ।
ପ୍ରାଣପ୍ରିୟେ ! ପଡୁଛିଟି [illegible] ମନେ
ଏହିସେ ତମାଳତରୁ ପାଶେ ଦିନେ;
ସୁଗନ୍ଧ ପଲ୍ଲବେ ରଚି ଅବତଂସ
ଗଣ୍ଡଦେଶେ ତୁମ୍ଭ କରିଥିଲି ବେଶ ।
ଚୂତତରୁ ଶିଖେ ଶିଖି ଡାକ ଦେଲେ,
ଦୁହେଁ ମିଶି ଶୁଣୁଥିଲେ କୌତୁହଳେ ।
ମହର୍ଷି ଅତ୍ରିଙ୍କ ପରମ ପାବନ
ତପୋବନ ଏହୁ କର ଦରଶନ ।
ଏଠି ପରସ୍ପର ଦ୍ୱେଷୀ ଜୀବଗଣ
ତେଜନ୍ତି ସ୍ୱଭାବ ବୈର ଅଚରଣ ।
ସ୍ୱପ୍ରୋତ୍ଭୂତ ବ୍ୟତିରେକେ ତରୁଗଣ
ଧରନ୍ତି ପ୍ରସବ ନାନା ଫଳମାନ ।
ଅତ୍ରି ସଧର୍ମିଣୀ ସତୀ ଅନୁସୂୟା,
ତପିବୃନ୍ଦ ଠାରେ ବହୁଣ ସୁଦାସ୍ୟା

ସେମାନଙ୍କ ଅବଗାହନ ନିମିତ୍ତ,
ଉଗ୍ରତର ତପଃ ଭରି ମନରେ ।
କାନନ ପ୍ରଦେଶେ ପୂତ ସୁରଧୁନୀ
ଅନସୂୟା ଆଣିଥିଲେ ତପସ୍ୱିନୀ ।
ତଟସ୍ଥଳେ ଉପବିଷ୍ଟ ଯୋଗିଗଣେ
ଏଣେ ଯୁକ୍ତ ଅଭିନିବିଷ୍ଟ ସ୍ମରଣେ ।
ବେଦୀ ମଧ୍ୟବର୍ତ୍ତୀ ମହୀରୁହଗଣ
ବାତାଭାବେ ସ୍ତବ୍ଧ ନୁହେ କମ୍ପମାନ ।
ନିସ୍ପନ୍ଦେ ଯେପରି ସେମାନଙ୍କ ତୁଲ
ଯୋଗାଭ୍ୟାସେ ରତ ସତେ ଅଚଳ ।
ସଖି ! ତୁମ୍ଭେ ଯେଉଁ ବଂଶବନ୍ଧାରେ
କରିଛ ପ୍ରାର୍ଥନା ଅଭୀଷ୍ଟ ସାଧନେ ।
ସେହି ଶ୍ୟାମବଟ ପଦ୍ମରାଗମଣି
ତୁଲ୍ୟ ଫଳପୁଞ୍ଜେ ଶୋଭିତ ଅଗ୍ରଣୀ,
ପୁଣି ହରିନ୍ମଣିସ୍ୱଚ୍ଛ ପତ୍ରାବଳୀ
ଶୋଭିତ ବଟରୁ ଦେଖ ମଇଥିଲୀ !
ଦେଖ ଦେଖ ପ୍ରିୟେ ! ଏହି ବନପଥ
ଦେଖି ମନେ ହୁଏ କାତର ହଠାତ୍ ।
ଶିରୀଷ କୁସୁମ କୋମଳ ଶରୀର
ଦଗ୍ଧ ତାର ପାଦ ଶୂଳ ଅତଦ୍ଭୁତ ।
ବାରମ୍ବାର ତୁମ୍ଭେ ପୁଚ୍ଛିଲ ଏମନ୍ତ
'ଅଉ କେତେ ବାଟ ଅଛି ଯିବା ବାକି ?'

ପ୍ରଥମେ ତୁମ୍ଭର ଶୁଣି ଏ ବଚନ,
ଅଶ୍ରୁଜଳେ ପୂର୍ଣ୍ଣ ହେଲା ମୋ ନୟନ ।
ତୁମ୍ଭର ସନ୍ତାପେ ପୃଥ୍ୱ ଙ୍କୁ ଗୃହଁ,
ସତ୍ୱର କହିଲି ହୋଇଣ ବନସ୍ଥୀ ।
'ତୁମ୍ଭ ନନ୍ଦନୀର ଚରଣ ଯୁଗଳ,
ଅଟନ୍ତି କେବଳ ଅତ୍ୟନ୍ତ କୋମଳ
କଠିନ ହେବାରୁ ତୁମ୍ଭର ଶରୀର
ଉଦ୍ୟେ ସ୍ୱଳ୍ପଚନ୍ଦ୍ର ଦେଖି ଧୀର ଧୀର ।
ମୃଦୁକର ପାଦ ପକାଇବା ସ୍ଥାନ
ପ୍ରିୟତମା ମୋର ସୁଖେ ଯାଉ ବନ ।'
ମୋ ସଙ୍ଗରେ ତୁମ୍ଭେ ଚରଣ ଗାମିନୀ
ହୋଇଲ ମାନସେ କଷ୍ଟକୁ ନଗଣି ।
ସୁଧାକରେ ଭଜେ ବେହୁଣୀ ଯେସନ
ମୋର ପଛେ ତୁମ୍ଭେ କରିଲ ଗମନ.
କଣ୍ଟକିତ ଲତା ସମ୍ମୁଖେ ଦେଖାଇ
ମଧୁରେ କହିଲି 'ଶୁଣ ପ୍ରାଣସହି !
ଦେଖ କୁଶବୃକ୍ଷେ ପରିପୂର୍ଣ୍ଣ ବନ,
ସାବଧାନେ ତୁମ୍ଭେ କରିବ ଗମନ ।
ବକ୍ର କର ଗ୍ରୀବା ନମ୍ର କର ଶିର,
କଣ୍ଟାଲତା ଅଛୁ ଉପରେ ତୁମ୍ଭର ।'
ଏଠାରେ କହିଲି ତୁମ୍ଭେ କେତେ ଥର,
'ତୁମ୍ଭ ପାଦରେଣୁ ଲାଗନ୍ତେ ପଥର;

ଶାପ ମୁକ୍ତ ହେଲ ଅହଲ୍ୟା ରମଣୀ,
ସାନନ୍ଦେ ପୂଜିଲ ଗଉତମ ମୁନି ।
ବିନ୍ଧ୍ୟ ସାନୁମାନେ କରନ୍ତେ ଭ୍ରମଣ
ଦାରଗ୍ରିସ୍ତ ହେବେ କେତେ ତପେଗଣ ।’
ଗିରିବର ରବି ସଙ୍ଗେ ହୋଇ ବାଦୀ
ଉଠିଲ ମଥା ଅଭ୍ରମାଳା ଭେଦି ।
ହେଲ ଅବରୋଧ ଆଦିତ୍ୟଙ୍କ ପଥ
ନ ଚଳିଲ ଆଉ ଛାୟାପତି ରଥ ।
ବିନ୍ଧ୍ୟ ପୂର୍ବ ପ୍ରାନ୍ତ ଅତଟେ ତାପିତ
ପଶ୍ଚିମ ପ୍ରାନ୍ତର ତିମିର ଆବୃତ ।
ମହର୍ଷି ଅଗସ୍ତ୍ୟ କୃପାରୁ କେବଳ
ବିଶ୍ୱପ୍ରାଣିଗଣ ହୋଇଲେ ନିଷ୍ଟଳ ।
କହିଗଲେ ଋଷି ନଫେରିଲେ ଯାଏ,
ଗୁରୁ ଆଜ୍ଞା ଏଡ଼ି ନପାରିଲ ସେହୁ ।
ଏଅନ୍ତେ କପର ଶାରେଖା ସୁନ୍ଦର ?
ବିମାନ ବେଗରେ ଯାଏ ଅପସର ।
ଏଅନ୍ତେ ଯମୁନା ନଦୀ ମନୋହର,
ଯାର ତଟେ ଧନ୍ୟ ଉନ୍ନତ କୁଟୀର ।
ଭରଦ୍ୱାଜ ମୁନି ପବିତ୍ର ଆଶ୍ରମ
ଦେଖ ଦେଖ ଦଣ୍ଡେ କେତେ ଶୋଭାବନ ।
ପବିତ୍ର ଜାହ୍ନବୀ ଯମୁନା ସଙ୍ଗମ
ରମଣୀଙ୍କ ଶୋଭା କରନ୍ତି ଧାରଣ ।

କାଳକଣ୍ଠ ପ୍ରଭା ଯମୁନା ଉଦକ,
ସିତ ଗଙ୍ଗାଜଳ ସଙ୍ଗେ ସମ୍ମିଳିତ ।
ତେଣୁ କାହିଁ ମରକତ ମଣି ସଙ୍ଗେ
ମୁକ୍ତାହାର ପଙ୍କ୍ତି ଗ୍ରଥିତ କି ରଙ୍ଗେ ?
କାହିଁ ଶ୍ୱେତପଦ୍ମ ମାଳାସହ ଅବା,
ଗୁନ୍ଥା ଇନ୍ଦୀବରଦଳ ପାଏ ଶୋଭା ?
କାହିଁ ପଂକ୍ତିବନ୍ଧ ରାଜହଂସ ମଧ୍ୟ,
ଉଡ଼ ଯାଉଥିବା କାଦମ୍ବ ସମୂହ !
କେଉଁ ଠାରେ ଶ୍ୱେତ ଚନ୍ଦନ ରଚିତ
ପତ୍ରାବଳି ମଧ୍ୟବର୍ତ୍ତୀ ସୁଶୋଭିତ;
ଶ୍ୟାମଳ ଚନ୍ଦନ ଚରଚିତ ପର
ଦେଖା ଯାଉଅଛି କି ଦୃଶ୍ୟ ସୁନ୍ଦର !
କୃଷ୍ଣ ସର୍ପ ଭୂଷା ଶୁକ୍ଳ ଭସ୍ମ ଲିପ୍ତ-
ଦେହ ଶଙ୍କରଙ୍କ ଯେସନ ଦର୍ଶିତ ।
ପୁଣ୍ୟ ସ୍ରୋତଦ୍ୱୟ ସଙ୍ଗମେ ସ୍ନାନ
କରନ୍ତେ ଜୀବନ ହୁଏ ପାପଶୂନ୍ୟ ।
ତତ୍କ୍ଷଣ କିବା ଲଭନ୍ତି ସ୍ୱର୍ଗ
ପରମପୁରୁଷ-ଅର୍ଥ ଅପବର୍ଗ ।
ଏହୁ ଦେଖ ସୀତେ ! ବନ ଅଧିବାସୀ
ନିଷାଦାଧିପତି ଗୁହଙ୍କ ନଗରୀ ।
ଏଠାରେ ମୁଁ ଶିରେଭୂଷଣ ସମ୍ପୂର୍ଣ୍ଣ
ଓହ୍ଲାରେ ଜଟା କଲ୍ ନିବନ୍ଧନ ।

କରିଥିଲେ ଏଠି ସୁମନ୍ତ୍ର ସେବନ
ଦେଖି କୈକେୟୀଙ୍କ ନିଷ୍ଠୁରାଚରଣ ।
ନିକଟବର୍ତ୍ତିନୀ ଅଯୋଧ୍ୟାର ଶଂଯୂ
ଦେଖ ପ୍ରିୟ ସଖି, ଧବଳ ସରଯୂ ।
ପୁଣ୍ୟ ପୟସ୍ୱିନୀ ସଲିଳ ସୁନୀଳ
ବ୍ରାହ୍ମସର ଯାର ଉତ୍ପତ୍ତି ସ୍ଥଳ ।
ଯାହାତୀରେ ଯେତେ ନୋହ୍ମ କଣ୍ଟକିତ ।
ଅଦ୍ୟାବଧି ସ୍ତୂପମାଳା ବିଭୂଷିତ ।
ଇକ୍ଷ୍ୱାକୁବଂଶୀୟ ନରପତି ଗଣ
ଅଶ୍ୱମେଧଯଜ୍ଞ କରି ଅବସାନ ।
ଯହିଁ ଅବଭୃଥ ଅବଗାହ ସାରି
ଯାର ଜଳ ପୂତ ଦେଖିଛନ୍ତି କବି ।
ସରଯୂ କୋଶଳ ଦେଶବାସୀ ଗଣ
ସାଧାରଣେ ଧାତ୍ରୀ ସ୍ୱରୂପ ନିଦାନ ।
ପୀୟୂଷ ସମାନ ଯାର ପୟଃ ପାନ
କରନ୍ତି ଯେ-ଦେଶ-ଲୋକେ ପ୍ରତିଦିନ ।
ଯାହାର ସିକତା ପୁଳିନେ ବିହାର
କରି ସୁଖେ ପରିବର୍ଦ୍ଧିତ ଶରୀର,
ଯାହାର ପରମ ସୁଖସ୍ପର୍ଶ ବାତ
କେତେ ଶାନ୍ତିପ୍ରଦ ହୁଏ ଅନୁଭୂତ ।
ପ୍ରିୟେ ! ଦେଖ ଦେଖ ଆକାଶ ଆବୃତ,
ତାମ୍ରବର୍ଣ୍ଣ ଧୂଳିପଟଳେ ଆବୃତ ।

ଶୁଣି ମୋର ପ୍ରତ୍ୟାବର୍ତ୍ତନ ବୃତ୍ତାନ୍ତ
ଆସଇ କରୁଣେ ପୁଣ୍ୟାତ୍ମା ଭରତ ।
ଶତ ଶତ ହସ୍ତୀ ଅସଂଖ୍ୟ ବାରଣ
ସୈନ୍ୟସାମନ୍ତାଦି ପରିଚାରଗଣ ।
ରମ୍ୟଛବି ଶୁଭ୍ର ଚାମର ସଚଳ,
ରଞ୍ଜିତ ଅଲଟ ଧ୍ୱଜ ମାଳ ମାଳ ।
ବାଜେ ଶତ ଶଂଖ କାହାଳୀ ସମୂହ
ବାଜଇ ବଲ୍ଲକୀ ବିଜୟ ପଟହ ।
ଜୀର୍ଣ୍ଣଚୀରଧାରୀ ଭରତ ଅଗ୍ରତେ
କୁଳଗୁରୁ ଅଗ୍ରସର ଅର୍ଘ୍ୟହସ୍ତେ ।
ତାଙ୍କ ପଶ୍ଚାଦ୍ଦେଶେ ବୃଦ୍ଧ ମନ୍ତ୍ରୀଗଣ,
ପଦବ୍ରଜେ କରୁଛନ୍ତି ଆଗମନ ।
ମହାମନା ସାଧୁ ସହଜ ଭରତ
ଅଙ୍କେ ଧରି ରାଜଲକ୍ଷ୍ମୀ ପିତୃଦତ୍ତ ।
କଠୋର ହେଲେହେଁ ଅଯୋଧ୍ୟାରେ ମୋର
ସାମ୍ରାଜ୍ୟ ପାଳିଲେ ଏତାବତ କାଳ ।
ମୋର ସମ ଦୁଃଖୀ ବୈରାଗୀ ସହୋଦର
ସାମାନ୍ୟ ତରୁଣ ନୁହେ ସମାଦର !"
ନୀରବ ହୁଅନ୍ତେ ଏହା କହି ରାମ,
ଅଭିଳାଷ ଜାଣି କୁସୁମ ସ୍ୟନ୍ଦନ ।
ଆକାଶ ପଥରୁ କ୍ରମେ ଅବତୀର୍ଣ୍ଣ
ହୋଇ ଭୂତଳରେ କଲା ଅବସ୍ଥାନ ।

ସମସ୍ତେ ବସ୍ତ୍ର ବସ୍ତ୍ରାଭରଣ ନେଲେ
ଊର୍ଦ୍ଧ୍ୱେ ମୂଳେ ଗୃହ୍ଣି ରହିଥିଲେ ସ୍ଥିତେ
ବିମାନ ଭୂପୃଷ୍ଠେ ଯେ ଅନ୍ତେ ପ୍ରବେଶ
ଫେରିଇଲେ ରଷ୍ଟ୍ର ଲଭି ମନେ ତୋଷ ।
ଚ ହୁନ୍ଦା ଭଗବେ ନନ୍ଦଘୋଷେ ଯେପନ୍ତେ
ଚତୁପାର୍ଶ୍ୱେ ସେବ ଯାଉଛନ୍ତି ଜନେ ।
ତଥା ଚତୁପାର୍ଶ୍ୱେ ପ୍ରାଚୀର ସମାନ,
ଅଛୁତେ ସୁନ୍ଦର ଦଶେ ଦବ୍ୟପାନ ।
ସେବା ବିଚକ୍ଷଣ ବାନର ନାୟକ
ସୁଗ୍ରୀବଙ୍କ ହସ୍ତ ଧାରଣ ପୂର୍ବକ;
ରଶୋପଭ ବିଭୂଷଣ ପ୍ରଦର୍ଶିତ
ଉଜ୍ଜ୍ୱଳ ସ୍ଫଟିକମଣି ନିରମିତ
ସୋପାନ ଅବଳୀ ମଧ୍ୟେ ପଦାର୍ପଣ,
କରି ରାମ ଧରାତଳେ ଅବତୀର୍ଣ୍ଣ ।
ଅଗ୍ରେ କୁଳଗୁରୁ ବଶିଷ୍ଠ ୦ —
ତଳେ ପ୍ରଣମିଲେ ଭକ୍ତିଭରେ ରାମ ।
ଅର୍ଘ୍ୟ ପ୍ରଦାନାନ୍ତେ ଅଶ୍ରୁପୂର୍ଣ୍ଣ ନେତ୍ରେ
ଭରତ ଶ୍ରୀଚରଣ ଧଇଲେ ଝଟତେ ।
ଆଶ୍ଳେଷ ପୂର୍ବକ ସେମାନଙ୍କ ଶିର
ଚୁମ୍ବନେ ବହୁତ ହେଲେ ଶୋକହର
ଅନନ୍ତର ବୃଦ୍ଧ ଅମାତ୍ୟ ନିକର
ପ୍ରଣାମ ଗ୍ରହଣେ ରାମ ଧନୁର୍ଦ୍ଧର;

କରୁଣାର୍ଦ୍ର ଦୃଷ୍ଟି କରଣ ନିପାତ,
କୁଶଳ ପ୍ରଶନେ କଲେ ଆନନ୍ଦିତ ।
ରାମ କପି ରାଜ ରକ୍ଷୋରାଜ ଲକ୍ଷ୍ୟେ
ଭରତ ସମ୍ମୁଖେ କହିଲେ ପ୍ରତ୍ୟକ୍ଷେ ।
"କିଷ୍କିନ୍ଧ୍ୟା ସମ୍ରାଟ ସୁଗ୍ରୀବ ବାନର
ସଂଗ୍ରାମେ ବିପଦବନ୍ଧୁ ମିତ୍ର ମୋର ।
ରାବଣ-କନିଷ୍ଠ ସାଧୁ ବିଭୀଷଣ
ସହାୟକ ଲଙ୍କା ବିଜୟ କାରଣ ।"
ରାମ ପରିଚୟ ପ୍ରଦାନେ ହର୍ଷିତ
କୋଳାଇଣ ବନ୍ଦିଲେ ଦୁହିଁଙ୍କୁ ଭରତ ।
ଭରତ ସମୀପେ ତତ୍ପର ଲକ୍ଷ୍ମଣ
ଉପସ୍ଥିତେ କଲେ ସାଷ୍ଟାଙ୍ଗ ପ୍ରଣାମ ।
ଭରତ ତାହାଙ୍କୁ କରି ଉତ୍ଥାପିତ
ମେଘନାଦ-ଶକ୍ତି-ଘାତେ କିଣାଙ୍କିତ;
ଦଂଶ ବକ୍ଷରୁ ସ୍ୱୀୟ ବକ୍ଷ ସ୍ଥଳେ
ସଂଲଗ୍ନେ ସୁଦୃଢେ ଶ୍ଳିଷ୍ଟ କରି ଦେଲେ ।
କରି ଯଥାଯୋଗ୍ୟ ମାନ୍ୟ ଆଲିଙ୍ଗନ
ତୃପ୍ତେ ସମସ୍ତେ କଲେ ଜୟଗାନ ।
ଶ୍ରୀରାମ ଆଦେଶେ କପି ସୈନ୍ୟଗଣ,
ହର୍ଷେ କରି ନର ବେଶ ପରିଧାନ;
ଗଜ ରଥ ପୃଷ୍ଠେ କଲେ ଆରୋହଣ,
ଦର୍ଶିଲ ସେ ଦୃଶ୍ୟ ଅତି ମନୋରମ ।

ସ୍ୱର୍ଣ୍ଣ ଦନ୍ତାବଳ-ଭଳୀ ଜ୍ୱଳନ୍ତ;
କିଅବା ନିର୍ଝର ଶୋଭିତ ପର୍ବତ ।
ଶୈଳାଧିରୋହଣେ ଯଥା ଦେବଯୂଥ
ସୁଖ ଅନୁଭବ କରନ୍ତି ନିରତ ।
ନିର୍ଦ୍ଦେଶାନୁସାରେ ସର୍ବ କପିବର,
ଅଶ୍ୱଗଜ ପୃଷ୍ଠେ ବସିଲେ ସତ୍ୱର ।
ରଥେ ବିଭୀଷଣ ସୁଗ୍ରୀବ ସୁନ୍ଦର
ରାହୁ କେତୁ ତୁଲ୍ୟ ବସି ପୁନର୍ବାର ।
ବୈଜୟନ୍ତୀ ପରେ ଶୋଭିତ ବିମାନେ
ରାମ ପୁନର୍ବାର ଆସୀନ ଯତନେ ।
ଅବା ସଚପଳ ସାୟଂତନ ଘନେ
ବୁଧ ବୃହସ୍ପତି ମଧ୍ୟେ ଚନ୍ଦ୍ର ଯେସନେ ।
ଭରତ ଲକ୍ଷ୍ମଣ ମଧ୍ୟେ ସେହିପରି
ଶୋଭିବନ ଦେଖାଗଲେ ରାବଣାରି ।
ରଥୋପରି ଭ୍ରାତୃ-ଜାୟା ଶ୍ରୀଚରଣେ,
ପ୍ରଣିପାତ କଲେ ଭରତ ଉତ୍କଣ୍ଠେ ।
ପ୍ରତ୍ୟୁତ୍ତରେ ବୀର ଲଙ୍କେଶ୍ୱର
ଯୋଡ଼ି ପାଦେ କରିଥିଲ ନମସ୍କାର ।
ସେହି ପଦ୍ମପୁରେ ପୁଣ୍ୟାତ୍ମା ଭରତ
ଅବ୍ୟକ୍ତ ବଚନେ ହୋଇଲେ ପ୍ରଣତ
ଜ୍ୟେଷ୍ଠ ପ୍ରେମେ ହୋଇ ଜଡ଼ ବିମଣ୍ଡିତ
ଉଭୟେ ଦର୍ଶିଲେ ମିଳନେ ପର୍ବତ ।

ଦେବରଥ ମନ୍ଦ ମନ୍ଦ ପୁନର୍ବାର
ଅଯୋଧ୍ୟାଭିମୁଖେ ହେଲା ଅଗ୍ରସର ।
ପ୍ରଜାପୁଞ୍ଜ ଅଗ୍ରେ ହେଲେ ଧାବମା ।
ପଶ୍ଚାତେ ସାମନ୍ତ ସୈନିକେ ଗମନ ।
ଅଶ୍ୱ ହ୍ରେଷାରବ ମାତଙ୍ଗ ବୃଂହିତ
ଅବଧ ବାଜଣା ଚୌଦିଗେ ପୂରିତ ।
ନନ୍ଦଗ୍ରାମେ ହେଲା ପୁଷ୍ପକ ବିମାନ
ରଘୁପତି ତହୁଁ କଲେ ଅବସ୍ଥାନ ।
ଅଳ୍ପ-ଜଳର ଅନାବେଶେ ଯଦ୍ରୂପ
ଲତା ଶୋଚନୀୟ ଅବସ୍ଥାକୁ ପ୍ରାପ୍ତ ।
ପତି ବିୟୋଗରେ କୌଶଲ୍ୟା ସୁମିତ୍ରା
କାଟୁଥିଲେ କାଳ ଭୋଗି ଶୋକମାନା ।
ଶ୍ରୀରାମ ଲକ୍ଷ୍ମଣ ଅଯୋଧ୍ୟା-ଉଦ୍ୟାନେ
ଯାଇ ମାତା ଦ୍ୱୟେ ଦେଖିଲେ ତକ୍ଷଣେ ।
ଭକ୍ତି ସହକାରେ ଚରଣ ବନ୍ଦନା
କଲେ ତୋଷେ ଯଥାବିଧି ଉପାସନା ।
ବହୁକାଳ ପରେ ଲଭନ୍ତି ସ୍ୱ ପୁତ୍ର
ଅବରୁଦ୍ଧ ହେଲା ବାଷ୍ପଜଳେ ନେତ୍ର ।
ଅଶ୍ଳେଷ-ଜନିତ ସୁଖ ସ୍ପର୍ଶେ ସ୍ତ ।
ହୋଇ ରାଣୀଦ୍ୱୟ ହେଲେ ଅବଗତ ।
ସେମାନଙ୍କ ନେତ୍ରୁ କ୍ରମେ ଅଶ୍ରୁଧାରା
ହେଲା ପ୍ରବାହିତ ଅନନ୍ତ ଶୋକାଶ୍ରୁ ।

ନିଶାଚର-ଅସ୍ତ୍ରଘାତ ଶୁଷ୍କ ବ୍ରଣ
ପୁତ୍ରଙ୍କ ଗାତ୍ରରେ କଲେ ନିରୀକ୍ଷଣ ।
ସଦୟେ କହିଲେ, "ବନସ୍ତେ ବହୁତ
ତୁମ୍ଭେ ଭ୍ରାତାଦ୍ୱୟ ରହିଲ କପଟ ?
ରାକ୍ଷସଙ୍କ ଠାରୁ ପାଇଲ କଷଣ,
ଯାହା ହେଲା ସବୁ [illegible] ବିଧାନ ।
ଲଲାଟ ଲିଖନ କେବେ ନୁହେ ଆନ
ଏହା ଦୈବବଳ ଅଟଇ ପ୍ରମାଣ ।
ଯେ କଥା ହେବାର ହୁଅଇ ନିଶ୍ଚୟ,
ନପାରେ ବାରଣ କରି ଦୟାମୟ ।
ନିଶ୍ଚୟେ ମିଳଇ ମିଳିବାର ଧନ
ସେଥିରେ ବସ୍ତୁ ବୃଥାର କାରଣ ।"
ଅନନ୍ତର ସୀତା ଶ୍ୱଶ୍ରୂଦ୍ୱୟ ପଦେ
କଲେ ପ୍ରଣିପାତ ବକ୍ତ୍ର ଗଦଗଦେ ।
କହିଲେ "ସ୍ୱାମୀଙ୍କ ଦୁଃଖର ନିଦାନ
ମୁହିଁ ଅଭାଗିନୀ କର କ୍ଷମା ଦାନ ।"
"ବତ୍ସେ, ଉଠ ତୁମ୍ଭ ସଚ୍ଚରିତ ବଳ
ଦୁସ୍ତର ସଙ୍କଟୁ କରଛି ଉଦ୍ଧାର ।
ପୂର୍ବକଥା ଅଦ୍ୟ ଭାବିଲେ କି ହେବ
ଶୋକାଭିସନ୍ତପ୍ତ ନୁହଇ ବାସ୍ତବ ।"
ଏହିପରି ସତ୍ୟ ପ୍ରିୟ ବାକ୍ୟଦାନେ
ସାନ୍ତ୍ୱନା ପ୍ରଦାନ କଲେ ମାତାମାନେ ।

ସସୈନ୍ୟେ ଅଗ୍ରେବସ୍ଥିତ ତୋରଣ
ଅମାତ୍ୟ ବର୍ଗଙ୍କୁ ସଙ୍ଗରେ ଘେନଣ,
ରଘୁକୁଳ ରାଜଧାନୀ ଅଭିମୁଖେ
ପୁଷ୍ପକ ଅରୋହି ଗତ କଲେ ସୁଖେ ।
ଶତ୍ରୁଘ୍ନ ସହ ରାଜୀବଲୋଚନା,
ଦବ୍ୟ ଭଣ୍ଡାରଠେ ହୋଇଲେ ଅଧୀନା ।
ରାମ ପଛେ ପଛେ ଚଳିଲେ ସକଳ
ବିଜୟ ଉଲ୍ଲାସେ ହୋଇଣି ଉଦ୍‌ବେଳ ।
ସୌଧୋପରି ଲାଗେ ପୁର କନ୍ୟାମାନେ
ରହି କଲେ ଲାଜ, ବର୍ଷଣ ଦର୍ଶନେ ।
ପୁଣି କେଉଁଠାରେ କେତେ ପୁର ନାରୀ
ବାତାୟନ ପଥେ ଚାହିଁଲେ ଠଉର ।
ଧିରେ ବଦ୍ଧାଞ୍ଜଳି ପ୍ରସାରଣ କରି
ତାହାଙ୍କୁ ପ୍ରଣାମ କଲେ ମନେ ସ୍ମରି ।
ଭେଦେ ବାମା ମିଳି ଦେଲେ ହୁଳହୁଳୀ
ଶବଦେ ନଗରୀ ପଡ଼ିଲା ଉଛୁଳି ।
ପତାକା ସମୂହ ବାତେ ପ୍ରକମ୍ପିତ
ତୋରଣ ଦୋହଲି ଘାତ ପ୍ରତଘାତ ।
ବିମାନ ଶିଖରେ ବିଜୟ ଚଳିଲ
ସୁଷମା ପାଣ୍ଡାର ଦ୍ୟୁତେ ଲଭେ ତରଳ ।
ରଥ ଚଉପାଶେ ମଣ୍ଡଳ ଆକାର
ବେଷ୍ଟିତ ପ୍ରହର-ଅୟୁଥ-ପ୍ରାଚୀର ।

ଅସଂଖ୍ୟ-ଦର୍ଶକ ପାରାବାର ସମ,
ମିଳି ଅନାୟାସେ କରନ୍ତି ଦର୍ଶନ ।
ପ୍ରବେଶିଲେ ଯାଇ ପୁଷ୍ପକ ସତ୍ୱର,
ନବର-ତୋରଣ ପାଶେ ନିରନ୍ତର ।
ଭଟ୍ଟଗଣ ମିଳି ଡାକିଲେ ବହନ
'ବନରୁ ଆଗତ ଶ୍ରୀରାମ ଲକ୍ଷ୍ମଣ ।"
ପ୍ରବେଶିଲେ ଯାଇ ସମସ୍ତେ ଭିତରେ
ଦର୍ଶକେ ଚଳିଲେ ଯେ ଯାହାର ଘରେ ।
ଅନନ୍ତର ବନ୍ଧୁପ୍ରିୟ ରଘୁନାଥ,
ମିତ୍ରବର୍ଗଙ୍କର ବିଶ୍ରାମ ନିମନ୍ତେ ;
ନିର୍ଦ୍ଦିଷ୍ଟ କରଣ ରମ୍ୟ ହର୍ମ୍ୟାବଳି,
ତହୁଁ ଅନ୍ତଃପୁରେ ଗଲେ ବେଗେ ଚଳି ।
ବାଷ୍ପପୂର୍ଣ୍ଣ ନେତ୍ରେ ଅଲେଖ୍ୟ-ବିଶିଷ୍ଟ
ଚିତ୍ର-ପୂଜାଗୃହେ ହେଲେ ଉପବିଷ୍ଟ ।
ଶ୍ରାବଣ-ବର୍ଷଣ ସମ ଅଶ୍ରୁଧାର,
ପିତା ଗୁଣ ସ୍ମରି ହୋଇଲେ କାତର,
ସେଠାରୁ ଭରତ ଜନନୀ ସମୀପେ,
ସାଷ୍ଟାଙ୍ଗ ପ୍ରଣାମ କଲେ ଯାଇ ଅପେ ।
ଲଜ୍ଜାପନୋଦନ ନିମିତ୍ତ ତାଙ୍କର,
ବକ୍ଷାଞ୍ଚଳପୁଟେ କହିଲେ ସତ୍ୱର ।
"ମାତା, ତୁମ୍ଭ ପୁଣ୍ୟବନ୍ତ ପିତା ମୋର,
ସତ୍ୟ ତୁଟେ ସ୍ୱର୍ଗେ କରନ୍ତି ବିହାର ।"

ବୈଦେହୀ ତାହାଙ୍କୁ କରି ଉତ୍ତୋଳନ
ସ୍ନିଗ୍ଧ ବକ୍ଷେ ଭରି କଲେ ଆଲିଙ୍ଗନ ।
ବିସ୍ମିତ ସୁଗ୍ରୀବ ବିଭୀଷଣ-ଆଦି,
ନିରୀକ୍ଷଣ କରି ଉପଗୃହ ବିଧି ।
ସର୍ବେ କୁହାକୁହି ହେଲେ ପରସ୍ପର,
ସର୍ବନ ଚରକ ଯାହାର ବେଶର ।
ତତ୍ପର ବଶିଷ୍ଠ ବୃଦ୍ଧ ମନ୍ତ୍ରିଗଣ
କଲେ ରାମ ଅଭିଷେକ ଆୟୋଜନ ।
ବାନର-ସମସ୍ତ ନିବଦ୍ଧ ରହିଲ
ସତ୍ୱର ଚଳିଲେ ଅଣି ସୁନେ ଜଳ ।
ପୁଣ୍ୟତୋୟା ନଦୀ, ସରସୀ ସାଗର
ନୀର ସ୍ୱର୍ଣ୍ଣକୁମ୍ଭେ ଭରିଲେ ନହ୍ନି ତୁଳ ।
ଅଗରୁ ଚନ୍ଦନ ସୁଗନ୍ଧ ରୁଚିର,
ପୂରିଲା ଉତ୍ସବେ ସାକେତ ନଗର ।
ବାଜନ ନିନାଦେ ପୂରିତ ଆକାଶ
ଧାମୀ ଅଭିରୁଚି ବଢ଼ାଇ ବିଶେଷ ।
ଦ୍ୱିଜଗଣ ମିଳି କଲେ ମନ୍ତ୍ରଗାନ
ତୀର୍ଥୋଦକେ ଅଭିଷେକ-ସମାଧାନ ।
ସିଂହାସନେ ରାମ ଅଧିକ ସୁନ୍ଦର
ଯାହାର ସୁଷମା ନୁହେ ପଟାନ୍ତର ।
ମନୋହର ବେଶେ ସୀତା ସୁଶୋଭିତା
ବାମା ବରଭାଗେ ଜନକସୁତା-ସୁତ ।

ଏବର ଶତ୍ରୁଘ୍ନ ଲକ୍ଷ୍ମଣ ଭରତ
ଉତ୍ତମ ଉତ୍ତମ ବେଶେ ବିଭୂଷିତ ।
ବହୁମୂଲ୍ୟ ବେଶ ଭଳି ପରିଧାନ
ଅନ୍ୟ ନୃପତି କଲେ ସମାଗମ ।

ତପୋଧନବୃନ୍ଦ ହେଲେ ଉପସ୍ଥିତ
କଲେ ଚନ୍ଦ୍ର ସହାୟ ବହୁତ ।
ଜନ ପରିପୂର୍ଣ୍ଣ କୋଶଳ ନଗର
ଦୀପ୍ତ-ବୀଚି-ମାଳା ତୁଲ୍ୟ ମନୋହର ।
ମନ୍ଦ୍ର 'ଜୟ' ଧ୍ୱନି ପୂରି ଘନ ଘନ
ପ୍ରକମ୍ପିତ ଗ୍ରାମ ଗିରି ଦରୀ ବନ ।

ପୌରଜନେ ନବେ ଚନ୍ଦ୍ରଭାନୁ ସମ
ସ୍ୱର୍ଣ୍ଣ-ସିଂହାସନେ ପ୍ରତିଷ୍ଠିତ ରାମ ।
ବିଦେହ ଦୁହିତା ମରାଳୀଗମନା,
ଅଛି ରାମ ବାମ ଅଙ୍କେ ସମାସୀନା ।
ଭକ୍ତ ସନ୍ନିଧିରେ ଦଶରଥ ସୁତ,
ରଘୁନାଥ ପଣ୍ଡାଦେଶେ ଉପନୀତ ।
ତଦୀୟ ମସ୍ତକ ପରେ ସ୍ୱର୍ଣ୍ଣଛତ୍ର
ଧରି ସମ୍ମୁଖକ କଲେ ଶତ୍ରୁଘ୍ନ ।

ଉଭୟ ପାର୍ଶ୍ୱରେ ଭରତ ଶତ୍ରୁଘ୍ନ
ସାନନ୍ଦେ ଚାଳିଲେ ସୁନ୍ଦର ବ୍ୟଜନ ।
କରଦ୍ୱୟ ଯୋଡ଼ି ହନୁ ମହାବୀର
ଶ୍ରୀରାମ ଦକ୍ଷିଣ ପାର୍ଶ୍ୱେ ମନୋହର ।
ସ୍ଥିତ, ଲଙ୍ଘି ସେତୁ ଦୁସ୍ତର ସାଧନେ,
ସୀତା ଠାବ କଲ ଅଶୋକ ବନିକେ ।

ଏମ ନିଶାଚର ପାପ ବେଳ ହତ,
ଅନଳ ସଂଯୋଗେ ଲଙ୍କା-ଭସ୍ମସାତ ।
ଶକ୍ତିଭେଦେ ଗମି ନାଶି କାଳନେମି
ରାତ୍ରି ମଧ୍ୟେ ଦେଲ ବିଶଲ୍ୟକରଣୀ ।
ସୁଗ୍ରୀବ ଭୂପତି ତହିଁ ଶରଣାଗତ,
ଋଷ୍ୟମୂକ ଗିରେ ରାମ ସଙ୍ଗେ ମିତ ।
ଯାର ଆଜ୍ଞା ପାଇ ବାନର କଳାପ,
ବାନ୍ଧ ମହାର୍ଣ୍ଣବ ନାଶିଲେ କୌଣପ ।
ରାଜା ବିଭୀଷଣ ଦର୍ଶନେ ମଞ୍ଜୁଳ
ନିବେଦନେ ଯାହାର ହତ ଚରଣକୁ ।
ବିଭୂଷିତ ତହିଁ ଅଙ୍ଗଦ ମର୍କଟ
ଯେହୁ ଆଣିଥିଲା ରାବଣ ମୁକୁଟ ।
ଯଥା ଯୋଗ୍ୟସ୍ଥାନେ ନୃପତି ସକଳ,
ଋଷି, ବାନରବୃନ୍ଦ ଶୋଭିତ ତାହିଁ ।
ବେଦରତ୍ନ ସର୍ବ ସୁଲଭେ ସଜ୍ଜିତ
ଯାର ଉପମାନେ ସୁଧର୍ମା ଲଜ୍ଜିତ ।
ରଘୁରାଜ ମଣିମୟ ଦିବ୍ୟହାର
ସୁଗ୍ରୀବ ଗଳାରେ ଦେଲେ ଅନନ୍ତର ।
ଚନ୍ଦ୍ରରଶ୍ମି ଯୁକ୍ତ ବୈଦୁର୍ଯ୍ୟ ମଣ୍ଡିତ
ବଳୟ ଯୁଗଳ ଅଙ୍ଗଦେ ପ୍ରଦାନ ।
ସୀତା କଣ୍ଠୁ କାଢ଼ି ଦିବ୍ୟହାର ରାମ
ପାବନିଗଳାରେ ଦେଲେ ରଘୁନନ୍ଦନ ।
ତଥାପି ସୀତାଙ୍କ ମନ ଅସନ୍ତୋଷ
ଜାଣି ରାମ ଦେଲେ ଦୁଇଗୋଟି ଦୋଷ ।

ସେଥିରେ ଠାକୁର ନପୂରିଲ ବାଞ୍ଛା
ଆଦେଶିଲେ ରାମ "ଦଅ ତୁମ୍ଭ ଇଚ୍ଛା" ।
ପାଇ ସୀତାଦେବୀ ପତିଙ୍କ ଆଦେଶ
ଧରି ଚନ୍ଦ୍ରକାନ୍ତହାର ଅବତଂସ;
ବାନର ପୁଙ୍ଗବ ପ୍ରଭଞ୍ଜନସୁତ
ଗଳାରେ ସାନନ୍ଦେ କଲେ ବିଲମ୍ବିତ ।
ଅଳଙ୍କୃତ ଧାର୍ଯ୍ୟ ଶୋଭି ହନୁ ଉର
ଦଶେ ଯଥା ମଣିମୟ ଶ୍ୱେତଗିରି ।
ଶ୍ରୀରାମ ଜାନକୀ ପଙ୍କଜ ଚରଣ
ସାନନ୍ଦେ ବନ୍ଦିଲ ସମୀରଣି ମନ ।
ଯଥୋଚିତ ସହ ହୃଷ୍ଟ କପିଯୂଥ
ସ୍ୱର୍ଣ୍ଣ ମଣି-ମୁକ୍ତା ପାଇ ଆନନ୍ଦିତ ।
ଏହୁ ସମୟରେ ନିଦ୍ରାଦେବୀ ଆସି
ସୁମିତ୍ରା ନନ୍ଦନେ ଧଇଲେ ଆକର୍ଷି ।
ହସ୍ତସ୍ଥିତ ଛତ୍ର ପଡ଼ିଲା ଭୂତଳେ
ଦେଖି ରାମଚନ୍ଦ୍ର ଅଳପ ହସିଲେ ।
ବନବାସ ବେଳେ ଲକ୍ଷ୍ମଣ ନୟନେ
ଆକର୍ଷଣ କଲ ନିଦ୍ରା ଅଦ୍ୟ ଦନେ ।
ଭୟ ଦେଖାଇଲେ ତାକୁ ଧନୁକରେ,
କହିଲେ "ମୋ ନେତ୍ରେ ନ ପଶିବୁ ବାରେ ।
ଚତୁର୍ଦ୍ଦଶବର୍ଷ ମୋ ଗାତ୍ର ଅନ୍ତର
ରହିବୁ ନିରତେ ଶୁଣ ବାରମ୍ବାର ।
ରାମ ରାଜା ହେବେ ସାକେତଭୁବନେ
ଜାନକୀ ବସିବେ ହର୍ଷେ ତାଙ୍କ ବାମେ ।

ହୋଇଥିବ ଉଗ୍ର ଖର ତପ୍ୟଛନ୍ନ
ମୋ ନେନେ, ସେକାଳେ ହୋଇଲୁ ବଦତ ।”
ବନବାସ କାଳ ରହି ଅନାହାର
କାଟିଲେ ଲକ୍ଷ୍ମଣ ମେଘନାଦ ଶିର ।
କହୁଥିଲେ ଗାଧିସୁତ ବିଶ୍ୱମିତ୍ର
ଦେଖିଲି ସେଦିନ ଉପଦେଷ୍ଟ ମନ୍ତ୍ର ।
“ବନବାସ ନେଲେ ସଦା ଉପବାସ
ରହିବ ଲକ୍ଷ୍ମଣ ଚଉଦ ବରଷ ।”
ଦେଖି ନାହିଁ ସେହୁ ରମଣୀ ବଦନ,
ଚତୁର୍ଦ୍ଦଶବର୍ଷ ନଥିବ ଶୟନ ।
ଅନାହାରେ ରହି କାଟିଥିଲ କାଳ,
ସେହୁ ଇନ୍ଦ୍ରଜିତେ ମାରିବ କେବଳ ।
ବିଧାତା ଲିଖନ ନ ହୋଇଲା ଆନ
ସମରେ ବଧିଲ ମନ୍ତ୍ରୀ ନାୟକାନ ।
କୌଶିକ ଗାଲବ ପରାଶର କଣ୍ୱ,
ଗାର୍ଗ୍ୟ ବିଶ୍ୱାମିତ୍ର କଶ୍ୟପ ଗୌତମ ।
ଭରଦ୍ୱାଜ ଅତ୍ରି ଅଗସ୍ତ୍ୟ ପ୍ରମୁଖ
ମୁନିଗଣ ଉପସ୍ଥିତ୍ ନାରୁଗଳ ।
ରାମଚନ୍ଦ୍ରଙ୍କର ଜାଣିବା ନିମିତ୍ତ
ରାବଣ-ବିଶ୍ରବ ଜନମ ବୃତ୍ତାନ୍ତ;
ଅମର ବିଜୟ ଗାଥାଲେ ମଗନ
ଶୁଣାଇ ପରମ ପୀଡ଼ର ଭଜନ ।
ଶୁଣି ରାମଚନ୍ଦ୍ର ବିଶେଷ ଅନନ୍ଦ,
ବିଦାୟ ଲଭିଲେ ତପୋଧନବୃନ୍ଦ ।

ମହର୍ଷି ବଶିଷ୍ଠ ଉପଦେଶାବଳୀ
ରାଜ୍ୟ ପାଳନର ପଦ୍ଧତି ପ୍ରଣାଳୀ ।
"ଆପଣା ମର୍ଯ୍ୟାଦା ଭଙ୍ଗ ନ କରିବ,
ବିପ୍ରଠାରେ ସଦାଥିବ ଗୌରବ ।
ପରଗୁଣେ ତୃପ୍ତି ବିଦ୍ୟାରେ ଆସକ୍ତ
ଲୋକ ଆମୋଦେ କରୁଥିବ ଚିତ୍ତ ।
ଆପଣା ରମଣୀଠାରେ ସଦା ପ୍ରୀତ
ରଖିଥିବ ଅସ୍ତ୍ର ଦମନେ ଶଙ୍କିତ ।
ସାମ୍ରାଜ୍ୟ ପାଳନେ ଏହା ଧର୍ମପଥ
ରାଜା ପ୍ରଜା ପିତା ପୁତ୍ର ଏ ନିଯୁତ ।"
ରଣ ସ୍ଥଳେ ଯାହା କହନ୍ତି ରାବଣ
ଚଳେ ତାହା ଅବଲମ୍ବନ ଶ୍ରୀରାମ ।
"ହିତଥିବ ଯାହା କରିବ ଚଞ୍ଚଳ
ଅବହେଳା କଲେ ହୁଅଇ ନିଷ୍ଫଳ ।
ବିଚାରି କରିବ ଭଲମନ୍ଦ ବେନି,
ମର୍ତ୍ତ୍ୟର ପ୍ରଭାବେ ସ୍ୱର୍ଗିତ ଧରଣୀ ।"
ଧର୍ମ ଅର୍ଥ କାମ ତ୍ରିବର୍ଗେ ଶ୍ରୀରାମ
ଅତି ସୁଖେ କଲେ ଅଯୋଧ୍ୟା ଶାସନ ।
'ରାମ ରାଜ୍ୟ' ମଧ୍ୟେ ପ୍ରକୃତ ପୁଞ୍ଜର
ସୁଖ ଉତ୍ସୀମା ହେଲା ପରକର ।
ସୌରଭେ ସାକେତପୁର ଉଦ୍ଭାସିତ,
ସୌଭାଗ୍ୟ ଉଦଧି ହେଲା ବିବର୍ଦ୍ଧିତ ।

ଝଦ୍ ଭୟ ନାଶ କରନ୍ତେ ଶ୍ରୀରାମ
ପ୍ରଜାଙ୍କର ହେଲା ମଙ୍ଗଳ ସାଧନ ।
ବଶ ହେଲେ ଛଦ୍ମାଚାରୀ ଶତ୍ରୁଗଣ
ନିର୍ଭେ ବେଭାର କର ଦରଶନ ।
ଶରଣ ପଶିଲେ ପ୍ରଜା ଭକ୍ତି ଭରେ
ପରମ ସୁଖରେ ଫେରିଲେ ସଭ୍ୱରେ ।
ଝଷ୍ଣୁ ସମାଗମେ କଭା ଦେବଗଣ
ଛଣେ ଛଣେ ଆସି କରନ୍ତି ଦର୍ଶନ ।
ନ ରହିଲା କିଛି କାହାର ଅଭାବ,
ପୌରବାସୀ ଓ ଦର୍ଶନେ ରାଘବ ।
ଜନକାତ୍ମଜାଙ୍କ ସଙ୍ଗେ ଅବିରତ
ମହାସୁଖେ କଲେ କାଳ ଅତିପାତ ।
ସ୍ୱାମୀ ଅପବର୍ଗ ପଦେ ସଦା ସୀତା
ଭକ୍ତିଭରେ ସେବି ହେଲେ ପତିବ୍ରତା ।



ସମାପ୍ତ

---

ବ୍ରହ୍ମପୁର ରସୂଲ ପ୍ରେସରେ ଶ୍ରୀ ସିଂହାଦ୍ରି ପଣ୍ଡାଙ୍କ
ଦ୍ୱାରା ମୁଦ୍ରିତ ଓ ପ୍ରକାଶିତ

